# ଭଞ୍ଜ ସାହିତ୍ୟରେ
# ପ୍ରକୃତି ଚିତ୍ର



କବିସମ୍ରାଟ ଉପେନ୍ଦ୍ରଭଞ୍ଜ

—ଲେଖକ—

ପଣ୍ଡିତ ଶ୍ରୀଧର ଶତପଥୀ

# ଭଞ୍ଜ ସାହିତ୍ୟରେ ପ୍ରକୃତି ଚିତ୍ର



—ଲେଖକ—

ପଣ୍ଡିତ ଶ୍ରୀଧର ଶତପଥୀ

ଜ୍ୟୋତିର୍ବିନୋଦ

ଲେଖକ ଓ ପ୍ରକାଶକ :—

**ପଣ୍ଡିତ ଶ୍ରୀଧର ଶତପଥୀ**

ଭଂଜନଗର, ଗଂଜାମ

ମୁଦ୍ରାକର :—

**ତାରା ପ୍ରେସ୍**

ବ୍ରହ୍ମପୁର-୧ (ଗଞ୍ଜାମ)

**ପ୍ରଥମ ସଂସ୍କରଣ—୧୯୮୧**

ମୂଲ୍ୟ—**ପାଞ୍ଚ ଟଙ୍କା**

ପ୍ରାପ୍ତିସ୍ଥାନ—**କଟକ ଓ ବ୍ରହ୍ମପୁରର ସମସ୍ତ ବହି ଦୋକାନ**

**BHANJA SAHITYARE PRAKRUTI CHITRA**

*(Literary Criticism)*

**Pandit Sridhar Satapathy**

Bhanjanagar (Ganjam)

PRINTER

**TARA PRESS**

*BERHAMPUR-1 (Gm)*

First Edition—1981

Price—**Rs. 5-00**

---

Paper used for this book supplied by Govt. of Orissa at Concessional rate, to submit for Text Book Purpose.



## —ଲେଖକଙ୍କ ପରିଚୟ—

୧୫-୯-୧୯୧୪ରେ ଜନ୍ମ, ପାରଳାଖେମଣ୍ଡିରେ ସଂସ୍କୃତାଧ୍ୟୟନ । ୧୯୨୪ ଠାରୁ ୩୦ ସୁଦ୍ଧା ବାସୁଦେବ ସଂସ୍କୃତ ଟୋଲରେ ପଢ଼ିବା ବେଳେ ପ୍ରତିଭା ପତ୍ରିକାର ସମ୍ପାଦକ । ଜ୍ୟୋତିଃ-ଶାସ୍ତ୍ରର ଅଧ୍ୟୟନ, ୧୯୪୭ରେ ଟେକ୍କାଳିରାଜ ଦରବାରରୁ ଜ୍ୟୋତିର୍ବିନୋଦ ଉପାଧିପ୍ରାପ୍ତ । ୧୯୬୦ରେ ଭଞ୍ଜ ସାହିତ୍ୟ ପରିଷଦର ସମ୍ପାଦକ । ୧୯୬୪ରେ ଭଞ୍ଜନଗର କଲେଜ ପରିଚାଳନା କମିଟିର ସଭ୍ୟ ।

# ଭୂମିକା

ଆଜକୁ ପ୍ରାୟ ୩ ବର୍ଷ ପୂର୍ବେ ଭଂଜସଂଦର୍ଭ ପ୍ରକାଶ ହୋଇ ଥିଲା । ସେଥିରେ ଭଂଜ ସମ୍ବନ୍ଧରେ ପ୍ରକୃତ ଥିଲା । ଅସୁବିଧା ବଶତଃ ବିସ୍ତରଣ ହେତୁ ତାହା ରହି ଯାଇଥିଲା । ତାହା ପ୍ରକାଶ କରିବା ଇଚ୍ଛା ଥିଲେ ମଧ୍ୟ, ଅର୍ଥାଭାବ ହେତୁ ପ୍ରକାଶ ହୋଇ ପାରି ନଥିଲା । ଇଷ୍ଟ ଦେବୀଙ୍କ କୃପାରୁ ଏବଂ ସାଂସ୍କୃତିକ ବ୍ୟାପାର ବିଭାଗର ଆଂଶିକ ସାହାଯ୍ୟ ହେତୁ ପ୍ରକାଶ ହୋଇ ପାରିଅଛି । ପ୍ରକାଶ କରିବା ଇଚ୍ଛା ନଥିଲେ ମଧ୍ୟ ଶ୍ରୀ ସଚ୍ଚିଦାନନ୍ଦ ରଥ, ଶ୍ରୀ ଉମାକାନ୍ତ ମିଶ୍ର, ଶ୍ରୀ ଏମ.ଏସ୍. ପଟ୍ଟନାୟକ, ଶ୍ରୀ ସଲୋମନ ଗଡ଼ଜ, ଶ୍ରୀ ଜଗନ୍ନାଥ ତ୍ରିପାଠୀ ଏମାନଙ୍କର ସଦିଚ୍ଛା ଉତ୍ସାହ ପ୍ରେରଣା ଦ୍ୱାରା, ଆଜ ଏହା ପ୍ରକାଶ ହୋଇପାରି ଅଛି ।

ମୋର ପୁତ୍ର ଅପ୍ସୁଷ୍ଠାନ୍ ମନ୍ମଥ କୁମାର ଶତପଥୀ ଓଡ଼ିଶାର ବିଶିଷ୍ଟ ନାଟ୍ୟକାର । ଶ୍ରୀ ସନ୍ତୋଷ କୁମାର ଶତପଥୀ, ଶ୍ରୀ ସୁରେନ୍ଦ୍ର କୁମାର ଶତପଥୀ ଶ୍ରୀ ହରିପଦ୍ମ କୁମାର ଶତପଥୀ ଏହି ବହି ପ୍ରକାଶରେ ବିଶେଷ ସାହାଯ୍ୟ କରିଥିବାରୁ ଏମାନଙ୍କର ଉନ୍ନତି ନିମନ୍ତେ କରୁଣାମୟୀ ଜଗଜ୍ଜନନୀ ଇଷ୍ଟଦେବୀ ଭୁବନେଶ୍ୱରୀ ନିକଟରେ ସର୍ବଦା ଗୁହାରି । ଶ୍ରୀ ତାରା ପ୍ରସାଦ ମିଶ୍ର ଏ ବହିର ସଂପୂର୍ଣ୍ଣ ପ୍ରୁଫ୍ ଦେଖିନେଇଥିବା ହେତୁ କୃତଜ୍ଞତା ଜଣାଉଛି । ଶେଷରେ ପାଠକ ପାଠିକା ମାନଙ୍କ ନିକଟରେ ମୋର ବିନୀତ ନିବେଦନ ଏହିକି ସେମାନଙ୍କର କିଛି ଉପକାର ସାଧିତ ହେଲେ ଶ୍ରମ ସାର୍ଥକ ମନେ କରିବି । ଇତି ।

ବିନୀତ
**ଲେଖକ**

# ଭଞ୍ଜ ସାହିତ୍ୟରେ ପ୍ରକୃତି ଚିତ୍ର

ଭଞ୍ଜ ସାହିତ୍ୟରେ ପ୍ରକୃତି ଚିତ୍ର ସମ୍ପର୍କରେ ଯାହାକିଛି ଲେଖିବା ସମୀଚୀନ ମନେ କରି ପ୍ରକୃତି କଣ, ତାହା ବୁଝାଇବା କଷ୍ଟହେଲେ ମଧ୍ୟ ଯତ୍ କିଂଚିତ୍ ଚେଷ୍ଟା କରାଯାଉଅଛି ।

## ପ୍ରକୃତି

ପ୍ର+କୃ+କ୍ତି କୃ,ଧାତୁର ଅର୍ଥ କରିବା, ଏହାର ବ୍ୟୁତ୍ପତ୍ତି ଗତ ଅର୍ଥ ହେଲା,ଏହି ସଚରାଚର ବିଶ୍ୱ ବ୍ରହ୍ମାଣ୍ଡ ଯାହାଦ୍ୱାରା ଗଠିତ ତାକୁ ପ୍ରକୃତି କୁହାଯାଏ । ପ୍ରକୃତି,ତ୍ରିଗୁଣାତ୍ମିକା ଅଟନ୍ତି । ଅର୍ଥାତ୍ ସତ୍ତ୍ୱ,ରଜ, ତମ ଗୁଣରେ ବିଦ୍ୟମାନ ଅଟେ । ଏହି ତିନିଗୁଣର ସାମ୍ୟାବସ୍ଥାକୁ ପ୍ରକୃତି କୁହାଯାଇ ଅଛି । ସତ୍ତ୍ୱ,ରଜ,ତମ ପ୍ରକୃତିର ଉପାଦାନ ବୋଲି ବୁଝି-ବାକୁ ହେବ । ପ୍ରକୃତି, ସତ୍ତ୍ୱ, ରଜ, ତମ ଏହି ତିନି ଗୁଣର ଏକତ୍ରିତ ଅବସ୍ଥା ଅଟେ । ପୁରୁଷର ଉଦ୍ଦେଶ୍ୟ ଚରିତାର୍ଥ କରେ ବୋଲି କିମ୍ବା ପୁରୁଷ ରୂପକ ପଶୁକୁ, ତ୍ରିଗୁଣାତ୍ମକ ମହଦାଦିରଜ୍ଜୁ ନିର୍ମାଣକରି ବନ୍ଧନରେ ଯୋଡିଦେବାରୁ,ଏମାନଙ୍କୁ ଗୁଣକହନ୍ତି । ସତ୍ତ୍ୱ, ରଜ ସ୍ତମସା ସାମ୍ୟାବସ୍ଥା ପ୍ରକୃତିଃ ଏହା ସାଂଖ୍ୟ ପ୍ରବଚନ ଭାଷ୍ୟରେ ଲେଖାଯାଇ-ଅଛି । "ଗୁଣଶବ୍ଦାଃ ପୁରୁଷୋପକରଣ ତ୍ୱାତ୍ ପୁରୁଷ ପଶୁବନ୍ଧକ ତ୍ରିଗୁଣାତ୍ମକ ମହଦାଦିରଜ୍ଜୁ ନିର୍ମାଣ ତ୍ୱାତ୍ ପ୍ରଯୁଜ୍ୟନ୍ତେ ।" ଏଣୁ ଏହାକୁ ଗୁଣ କୁହାଯାଏ । ପ୍ରକୃତିର ରୂପ କିଛି ନଥିଲେ ମଧ୍ୟ ସମସ୍ତ ବିଶ୍ୱ ଓ ବିଶ୍ୱର ସମୁଦାୟ ପଦାର୍ଥ ପ୍ରକୃତିରୁ ଜାତ ହୋଇଅଛି ।

ସୃଷ୍ଟିର ଉପର ଉଦ୍ଦେଶ୍ୟରେ ପୁରୁଷ ଆବଶ୍ୟକ, ପ୍ରକୃତି ଓ ପୁରୁଷର ମିଶ୍ରଣରେ ସୃଷ୍ଟିର ପ୍ରାଣୀ ସ୍ଥାବରାଦି ସୃଷ୍ଟି ହୋଇଅଛି । ପ୍ରକୃତି ତ୍ରିଗୁଣାତ୍ମିକା ପୁରୁଷ ଗୁଣାତୀତ, ସେହିହେତୁ ସପ୍ତ ଶତୀ-ଚଣ୍ଡିରେ ଅଛି ।

ହେତୁଃ ସମସ୍ତ ଜଗତାଂ ତ୍ରିଗୁଣାପି ଦୋଷୈ
ର୍ନ ଜ୍ଞାୟସେ ହରିହରାଦିଭି ରପ୍ୟପାରା ।

ସର୍ବାଶ୍ରୟାଖିଳମିଦଂ ଜଗଦଂଶ ଭୂତ
ମବ୍ୟାକୃତାଚ୍ଚ ପରମାପ୍ରକୃତି ସ୍ତ୍ୱମାଦ୍ୟା

ହେ ସନ୍ଧ୍ୟରେମା ଆଦ୍ୟାପ୍ରକୃତିଙ୍କ ଠାରୁ ସମସ୍ତ ଜଗତ ଉତ୍ପତ୍ତି । ଆପଣଙ୍କ ନିକଟରେ ସତ୍ତ୍ୱ, ରଜ, ତମ, ତ୍ରିଗୁଣ ଅଛି । କିନ୍ତୁ ଦୋଷ ସହିତ ସମ୍ପର୍କ ନାହିଁ । ହରି ହର ଓ ଦେବତାମାନେ ମଧ୍ୟ ଏହାର ତତ୍ତ୍ୱ ପାଇ ନାହାନ୍ତି । ତଥାପି ଆପଣ ଜଗତର ଆଶ୍ରୟ ଅଟନ୍ତି । ଏହି ସମସ୍ତ ବିଶ୍ୱ ଆପଣଙ୍କର ଅଂଶ ବିଶେଷ, କାହିଁକି,ଆପଣ ସମସ୍ତଙ୍କର ଆଦିଭୂତ ଅବ୍ୟାକୃତା ପରାପ୍ରକୃତି ଅଟନ୍ତି, ପ୍ରକୃତି ଦ୍ୱାରା ସୃଷ୍ଟି ଓ ସୃଷ୍ଟିର ପଦାର୍ଥ ତିଆରି ହେଉଥିଲେ ମଧ୍ୟ ପୁରୁଷର ଆବଶ୍ୟକ ଥିବା ଉପନିଷଦରେ କୁହାଯାଇଅଛି ।

ତସ୍ମୈ ସହୋବାଚ ଇହୈବାନ୍ତ ଶରୀରେ
ସୋମ୍ୟୋ ସପୁରୁଷୋ ଯସ୍ମିନ୍ନେତାଃ
ଷୋଡ଼ଶ କଳା ପ୍ରଭବନ୍ତୀତି ।

ପ୍ରଶ୍ନୋପନିଷଦର ଦ୍ୱିତୀୟ ଶ୍ଳୋକରେ ଏହା କୁହାଯାଇଅଛି । ପୁଣି ଚତୁର୍ଥ ଶ୍ଳୋକରେ କୁହାଯାଇଅଛି ।

ସପ୍ରାଣମସୃଜତେ ପ୍ରାଣାତ୍ ଶ୍ରଦ୍ଧାଂ ଖଂ
ଅଗ୍ନି ବାୟୁ ର୍ଜ୍ୟୋତି ରାପଃ, ପୃଥ୍ୱୀନ୍ଦ୍ରିୟଂ
ମନୋଽନ୍ନମନ୍ନାତ୍ ବୀର୍ଯ୍ୟଂତପୋ ମନ୍ତ୍ରାଃ
ଲୋକା ଲୋକେଷୁ ଚ ନାମଚ ।

ପୁରୁଷ ପ୍ରାଣକୁ ସୃଷ୍ଟି କଲା ପରେ ଶ୍ରଦ୍ଧା, ଆକାଶ, ଅଗ୍ନି,ବାୟୁ, ଜ୍ୟୋତି, ଜଳ, ପୃଥିବୀ, ଦଶ ଇନ୍ଦ୍ରିୟ ଉଭୟାତ୍ମକ ମନ ଓ ଅନ୍ନ, ଅନ୍ନରୁ ବୀର୍ଯ୍ୟ ତପ,ମନ୍ତ୍ର,ଲୋକ ଓ ଲୋକମାନଙ୍କର ନାମ ରଚନା କଲେ । ଯଥା ଭୂର୍ଲୋକାଦି । ଏହାର ବହୁ ପ୍ରମାଣ ପୁରୁଷ ସୂକ୍ତରେ ମିଳେ । ଏହି ପୁରୁଷ ଓ ପ୍ରକୃତିର ମିଳନ ସମ୍ପର୍କରେ ଉପେନ୍ଦ୍ର ଭଞ୍ଜ ଲେଖି ଅଛନ୍ତି ।

ତିନ ଜଗଙ୍କର ବୟାଳିଶ ଲୋଚନ
ଧବଳଶରୀର ତାଙ୍କର
ସତ୍ତ୍ୱ ରଜ ତମ ତ୍ରିଗୁଣ ପ୍ରକାରେ
ଉତ୍ତମ ଲୋକଙ୍କ ବେଭାର ।
ଚାରିଗଡ ଦ୍ୱାରେ ଚାରି ମହାରଥୀ
ଜଗିଣ ଅଛନ୍ତି ବସି
ଷୋଳ ସେନାପତି ଛୟାନବେ କନ୍ଧ
ବୁଲୁଛନ୍ତି ଅହର୍ନିଶି ।
ମାର ମାର ଧ୍ୱନି ଶବଦ ଶୁଭଇ
ଡାକପଡ଼େ ନିରନ୍ତର
ସେ ପୁଣି ମରଇ ସେ ପୁଣି ଜୀଅଇ
ସେ ପୁଣି ପଶଇ ଘର ।

ତିନିଜଗ କୁଣ୍ଡଳୀଣୀଠାରୁ ଅର୍ଥାତ୍ (ନାଭି କମଳ ଠାରୁ) ତ୍ରିଭାଗ ହୋଇଥିବା ଇଡ଼ା ପିଙ୍ଗଳା ସୁଷମ୍ନା ନାଡ଼ୀ । ଏହାଙ୍କୁ ସତ୍ତ୍ୱ, ରଜ, ତମ ତ୍ରିଗୁଣରେ ବିଗ୍ରହ କରିବାକୁ ପଡିବ । ଏହାର ୪୨ ଲୋଚନ ଅଛି । ନାଭିର ଦଶ ଦଳରେ ୧୦ ଅକ୍ଷର, ହୃଦୟର ଦ୍ୱାଦଶ ଦଳରେ ୧୨ ଅକ୍ଷର, କଣ୍ଠର ଷୋଡ଼ଶ ଦଳରେ ଷୋଳ ଅକ୍ଷର, ଆଖିର ଦୁଇ ଅକ୍ଷର ମିଶି ୪୦ ହେଲା । ଉର୍ଦ୍ଧ୍ୱକୁ ବ୍ୟାପୀ ରହିଥିବା ଓଁକାରର ଅଗ୍ରଭାଗରେ ଚନ୍ଦ୍ର ଓ ବିନ୍ଦୁ ମିଶି ୪୨ ହେଲା । ଏହା କେବଳ ଯୋଗୀ ଓ ସାଧକ ଲୋକଙ୍କର କଳ୍ପନା ଅଟେ ୪ଗଡ଼ଦ୍ୱାର ଚକ୍ଷୁ, କର୍ଣ୍ଣ, ନାସିକା ଓ ଜିହ୍ୱା ଅଟେ । ମହାରଥୀ ଧର୍ମ, ଅର୍ଥ, କାମ ଓ ମୋକ୍ଷ ଷୋଳ ସେନାପତି ପ୍ରାଣ, ଶ୍ରଦ୍ଧା, ଆକାଶ ବାୟୁ, ଜ୍ୟୋତି, ଜଳ, ପୃଥ୍ୱୀ ଦଶଇନ୍ଦ୍ରିୟ ମନ, ଅନ୍ନ, ବୀର୍ଯ୍ୟ, ତପ, ମନ୍ତ୍ର,କର୍ମ, ଲୋକ ଓ ଲୋକର ନାମ ପୁରୁଷଙ୍କ ଦ୍ୱାରା ସୃଷ୍ଟି କରା ଯାଇ ଥିବା ଷୋଳକଳା ଛୟାନବେ କନ୍ଦରେ ପ୍ରାଣାଦି ଦଶବାୟୁ ଦ୍ୱାରା ଘୂରିବୁଲୁଛନ୍ତି । ହୃଦୟରୁ ମାର ମାର ଧ୍ୱନି ଶୁଭୁଛି । ସେ ମରୁଛି ଓ

ବନ୍ଦୁଛି । ସେ ପୁଣି ଚନ୍ଦ୍ରହାର ସ୍ଥିମିତ୍‌କୃତ ଘରେ ପ୍ରବେଶ କରୁଅଛି । ଏହିପଦ ମାନଙ୍କରେ ପୁରୁଷ ଓ ପ୍ରକୃତିର ମିଳନ କପରି ହୋଇଛି ତାହା ଦର୍ଶାଯାଇଅଛି । ପୁରୁଷ ଓ ପ୍ରକୃତି ଅଦୃଶ୍ୟ । ଏମାନଙ୍କର କିଛି ନାହିଁ, ସବୁ ଅଛି ।ପ୍ରତ୍ୟକ୍ଷାନୁଭୂତି ସମ୍ପର୍କରେ ଜଣାଯାଏ ଦୁଇଟି ପଥର ଘର୍ଷଣରେ ଅଗ୍ନି ବାହାରିବା ପରି ଜଣାଯାଏ । ସେ ଅଗ୍ନି-ମଧ୍ୟ ଅଦୃଶ୍ୟ । ଅଦୃଶ୍ୟ ହେଲେ ମଧ୍ୟ ଅନୁଭୂତିରୁ ଜଣାଯାଏ ସେ ଅଛନ୍ତି । ଉପେନ୍ଦ୍ର ଭଞ୍ଜ ଯେତେ କାବ୍ୟ ଲେଖି ଅଛନ୍ତି, ସେହି କାବ୍ୟର ନାୟକ ଓ ନାୟିକାଙ୍କୁ ପୁରୁଷ ଓ ପ୍ରକୃତି ରୂପେ ଚିତ୍ରଣ କରି ଅଛନ୍ତି । ସାଂଖ୍ୟ କାରିକା ତତ୍ତ୍ୱ କୌମୁଦୀ ମତାନୁସାରେ । ପ୍ରକୃତି ଚିତ୍ରକର ଉପେନ୍ଦ୍ର ଭଞ୍ଜ କପରି ତାଙ୍କର କୃତ କାବ୍ୟ ମାନଙ୍କରେ ପ୍ରକୃତିର ବର୍ଣ୍ଣନା ପ୍ରସଙ୍ଗରେ ଚିତ୍ରକରି ଅମର ହୋଇ ଅଛନ୍ତି । ସତ୍ତ୍ୱ ରଜ ତମ ଦ୍ୱାରା ତ୍ରିଗୁଣ ରଜ୍ଜୁରେ ପ୍ରକୃତି ପୁରୁଷକୁ କପରି ଧରି ଆଣେ, ତାହା ଲାବଣ୍ୟବତୀ କାବ୍ୟରେ ତୃତୀୟ ଛନ୍ଦର ୧୧୨ ପଦରେ କପରି ଲେଖା ଯାଇଅଛି, ତାହା ଦେଖନ୍ତୁ ।

ନିଃସନ୍ଦେହରେ ଏକଥା ଉଦୟ ପଶୁ ହୋଇବେ ଯୁବାସମୁଦାୟ । ଏହି ଛନ୍ଦରେ ଲାବଣ୍ୟବତୀର ପୁଷ୍ପବତୀ ବର୍ଣ୍ଣନା ହୋଇଅଛି, ଉତମ ଛଳରେ ବସ୍ତ୍ର ବର୍ଣ୍ଣନା ମଧ୍ୟ ଅଛି । ପ୍ରକୃତି ଶୋଭରେ ଶୋଭିତ ହୋଇଥିବା ହେତୁ ପୁରୁଷ ରୂପକ ଯୁବକକୁ ପଶୁପରି ଟାଣି ଆଣୁ ଅଛି । ଏଥିରେ ସଂଶୟ ହେବାର କାରଣ କିଛି ନାହିଁ । ଏପରି ଉଦୟ ହେଉଅଛି ବୋଲି କବି ଉପେନ୍ଦ୍ର କହି ଅଛନ୍ତି ।

ପ୍ରକୃତି ଓ ପ୍ରକୃତିର କାର୍ଯ୍ୟ ସମ୍ବନ୍ଧରେ ଏହି କ୍ଷୁଦ୍ର ପୁସ୍ତିକାରେ ଲେଖି ବୁଝାଇବା ଧୃଷ୍ଟତା ଛଡ଼ା ଆଉ କିଛି ନୁହେଁ । ଏହି ସାଧାରଣ ଚେଷ୍ଟା ପାଠକ ମାନଙ୍କର କିଛି ଉପକାରରେ ଆସିଲେ ଶ୍ରମ ସାର୍ଥକ ମଣିବ । ଇତି ।

ବିନୀତ,

**ଲେଖକ**

କବି ମହାକବିଗଣ ପ୍ରକୃତିର ବର୍ଣ୍ଣନା କରିବାକୁ ଗଲାବେଳେ ତାଙ୍କର ଚକ୍ଷୁରେ ସମସ୍ତ ପ୍ରକୃତି ସମାନ ଥିବା, କାବ୍ୟମାନଙ୍କରୁ ଜଣାଯାଏ । ଭଗବାନଙ୍କ ସୃଷ୍ଟିରେ କେତେକ ପଦାର୍ଥ ସୁନ୍ଦର ଓ ଅସୁନ୍ଦର ଗୁଣ, ଦୁର୍ଗୁଣ, ହିତ, ଅହିତ ମଧ୍ୟଅନୁଭୂତ ହୁଏ । ଯଥା ବିଛୁଆତି, ତୁଳସୀ, ବିଷ ଓ ଅମୃତ ପ୍ରଭୃତି ସୃଷ୍ଟି କରି ଅଛନ୍ତି । ସୃଷ୍ଟିରେ ପ୍ରକୃତି ଜାତ ପଦାର୍ଥଗୁଡ଼ିକ କେତେକଙ୍କ ପକ୍ଷେ ହିତ ଓ ଅହିତ ମଧ୍ୟ ହୋଇଥାଏ । ବହୁ ପଦାର୍ଥର ଗୁଣ ଓ ଦୁର୍ଗୁଣ ବିବେଚନା କରି କବିଗଣ ଲେଖିଥିବା ମନେହୁଏ । କବି ମହାକବି ମାନଙ୍କର ଆଲୋଚନା ଦୋଷଯୁକ୍ତ ବୋଲି ଆଲୋଚନା କରିବା ଅନୁଚିତ ଅଟେ ।

କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ କାବ୍ୟ ମହାକାବ୍ୟ ସଂଗୀତ ପ୍ରଭୃତି ଲେଖିବା ବେଳେ ଗୁମୁସର ରାଜଧାନୀ ଗୁମୁସରଗଡ଼ (ଜୟନ୍ତ ଗଡ଼) କୁଳାଡ଼ ଗଡ଼ରେ ବହୁ ସଂସ୍କୃତ ପଣ୍ଡିତଗଣ ରହି ତତ୍କାଳୀନ ଗୁମୁସର ରାଜା ଧନଞ୍ଜୟ ଭଞ୍ଜଙ୍କର ରାଜସଭା ମଣ୍ଡନ କରୁଥିଲେ । ସମୟ ସମୟରେ ଦିଗ୍ବିଜୟୀ ପଣ୍ଡିତମାନେ ଗୁମୁସର ରାଜ୍ୟକୁ ଆସି ନାନାଦି ଶାସ୍ତ୍ର ଆଲୋଚନା କରି, ସମ୍ମାନ ପାଉଥିବା ଅପ୍ରକାଶ ଗୁମୁସର ଇତିହାସମାନଙ୍କରୁ ଜଣାଯାଏ । ପଣ୍ଡିତମାନଙ୍କର ସଂସ୍କୃତ ଶାସ୍ତ୍ର ତଥା କାବ୍ୟମାନଙ୍କରୁ ହେଉଥିବା ବହୁ ତର୍କର ପ୍ରମାଣ ରହିଅଛି ଓ ସେଗୁଡ଼ିକ ଯଥା ସ୍ଥାନରେ ଦିଆଯାଇଅଛି । ପଣ୍ଡିତମାନଙ୍କର ମତରେ ସଂସ୍କୃତ ଭାଷା ବିନା ମାତୃଭାଷାରେ କାବ୍ୟ ଲେଖିବା ସମ୍ଭବ ନୁହେଁ । ଏସବୁ ବିଷୟଗୁଡ଼ିକ ଜାଣି ଓ ଶୁଣି କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ କୃତ କାବ୍ୟକୁ ଏପରି ଲେଖି ଅଛନ୍ତି ଯେ ତାହା ସଂସ୍କୃତ କାବ୍ୟମାନଙ୍କ ସହ ସମାନ ହୋଇ ପାରିଅଛି ।

ଏତେକି ତାଙ୍କର କୋଟୀ ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟକୁ "ଦ୍ୱିତୀୟ ନୈଷଧ ଚରିତ୍ର" ବୋଲି କହି ଅଛନ୍ତି । ମହାକବି କାଳିଦାସଙ୍କ କୁମାର ସମ୍ଭବରେ ବର୍ଣ୍ଣିତ ପୁଷ୍ପବେଶକୁ ଓ ମେଘଦୂତରେ ବର୍ଣ୍ଣିତ ଅଳକା ପୁରରେ ଥିବା ଷଠ୍ ଫୁଲ ବିଶିଷ୍ଟ ସୁନ୍ଦରୀ କନ୍ୟାର ବେଶକୁ ଆଣି ଲାବଣ୍ୟବତୀ କାବ୍ୟରେ ଷୋଳ ଫୁଲ ବିଶିଷ୍ଟ ସୁନ୍ଦରୀ ଲାବଣ୍ୟବତୀର ବର୍ଣ୍ଣନାରେ ରଖି ଅଛନ୍ତି ଏବଂ ସୁଭଦ୍ରା ପରିଣୟ କାବ୍ୟରେ ସାତ ପ୍ରକାର ଫୁଲ ଫଳ ପକ୍ଷୀର ଲକ୍ଷଣ ଅଦ୍ଭୁତ ଉପମା ପ୍ରସଙ୍ଗରେ ବର୍ଣ୍ଣନା କରି ଯାଇ ଅଛନ୍ତି ।

## ପ୍ରକୃତି

ପୃଥ୍ୱୀ, ଆପ୍, ତେଜ, ବାୟୁ, ଆକାଶ, ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ, ଶ୍ରୋତ୍ର, ତ୍ୱକ୍, ଚକ୍ଷୁ, ଜିହ୍ୱା, ଘ୍ରାଣ, ବାକ୍, ପାଦ, ପାଣି, ପାୟୁ ଉପସ୍ଥ, ବଚନ,ଦାନ, ଗତି, ବିସର୍ଗ, ଆନନ୍ଦ, ମନ, ବୁଦ୍ଧି, ଅହଂକାର, ଏଗୁଡ଼ିକ, ପ୍ରକୃତି, ଏବଂ ଏଥିରୁ ଜାତ ବିଶ୍ୱର ମନୁଷ୍ୟ, ପକ୍ଷୀ, ପଶୁ, କୀଟ, ପତଙ୍ଗ, ସ୍ଥାବର ପ୍ରଭୃତି ଜାତ ହୋଇ ଅଛି । ଏହି ପ୍ରକୃତିରୁ ଜାତ ଫୁଲ ଫଳ ସୌର ଜଗତରେ ସୂର୍ଯ୍ୟାଦି ନବଗ୍ରହ, ନକ୍ଷତ୍ର, ଅୟନ, ମାସ, ଦିନ, ମୁହୂର୍ତ୍ତ, ମେଘ, ଜଳ, ସମୁଦ୍ର, ନଦ, ନଦୀ, ଉଷା ଓ ସନ୍ଧ୍ୟାକାଳ ପ୍ରଭୃତିର ବର୍ଣ୍ଣନା କବି ମାନେ ନାନା ଭାବରେ ବର୍ଣ୍ଣନା କରି କାବ୍ୟ ଓ ମହାକାବ୍ୟ ମାନ ସୃଷ୍ଟି କରି ଅଛନ୍ତି । ତା ମଧ୍ୟରୁ ପ୍ରଥମେ ଋତୁ ବର୍ଣ୍ଣନା ଦିଆ ଯାଉ ଅଛି ।

## ବସନ୍ତ ଋତୁ

ଏହି ସମୟରେ ସୁନ୍ଦରୀ ଶ୍ରୀମୁଖରେ
ଶୁଭ ମଞ୍ଜୁଳା ଜଣାଇଲା

ଅତି ମଧୁର — ମଧୁଋତୁ ପ୍ରବେଶ
କତ୍ତି ଦିନ ହେଲା ହୋଇଲା
ଶ୍ରବଣ, କରନାହୁଁ ନବ କାମିନୀ
ପିକ ବଚନେ — ପୁନଃପୁନଃ ପ୍ରକାଶ
କଲଣି ଦିବସ ରଜନୀ ।
ମଳୟ ଶିଖର — ଶିଷ୍ଟ ଗୈର କର
ବହିଲଣି ମନ୍ଦ ସମୀର
ସୁମନରୁ ବାସ — ଗ୍ରହିଇ ନେବଟି
ବୋଲ କହିଲଣି ଭ୍ରମର
କେଶର, କେଶରେ ହେଲେଣି ମଞ୍ଜୁଳ
କେଶରେ ମଣ୍ଡନ — କରିବା ଉଳରେ
ଫୁଟିଲେଣି କେତେ ବଞ୍ଜୁଳ ।
ମଲ୍ଲୀମାଧବୀ — ମକରନ୍ଦ ସାଧବୀ
ହେଲେଣି ବାନ୍ଧବୀ କାନନେ
ତୁଷାର ନାଶ — ଗୁହ୍ୱି ହାସ ପ୍ରକାଶ
କଲେଣି ପଙ୍କଜ ଆନନେ
ହେଲଣି, ଚଞ୍ଚରି — ପ୍ରକଟ କଟକେ
ଅତନୁ ଫୁଲର — ବିଶିଖ କାମୁକ
ଯେଣ ରଚିଲଣି କାମୁକେ । ଲା· ବ·

ଲାବଣ୍ୟବତୀ ସହସଙ୍ଗିନୀମାନଙ୍କ ସହିତ ଉପବନରେ ଭ୍ରମଣ କଲାବେଳେ ପ୍ରଭାମଞ୍ଜୁଳା ସଖୀ କହିଲା । ହେ ଜଗନ୍ମୋହନ ରାଜକୁମାରୀ ସୁନ୍ଦର ବସନ୍ତ ଋତୁ ତାହାଙ୍କ ସମସ୍ତ ଉପାଦାନ ଧରି ପ୍ରବେଶ କଲଣି । ପିକ, ଦିବସ ଓ ରଜନୀରେ ବାରଂବାର ରବକରି,

ବସନ୍ତ ଋତୁର ପ୍ରଚ୍ଚୁର କଲଣି । ମଳୟ ଦେଶର ଶ୍ରୀ (ଶୋଭା) ସ୍ବୈର କର ମୃଦୁ ମନ୍ଦ ମଳୟ ସମୀର ବହିବାକୁ ଲାଗିଲଣି । ସୁମନା (ଫୁଲ ଓ ଉତ୍ତମା ସ୍ତ୍ରୀ) ସୁମନାରୁ ବାସ ନେଇବାଇ ନେବ ବୋଲି ଭ୍ରମର ଗୁଣୁ ଗୁଣୁ ସ୍ୱରରେ କହିଲଣି । ନାଗେଶ୍ୱର ପୁଷ୍ପ ପ୍ରଭୃତି ପ୍ରକାଶ ହୋଇ କେଶରେ ମଣ୍ଡନ ହେବାପାଇଁ ବ୍ୟଗ୍ର ହେଲେଣି । ମଲ୍ଲୀ ମାଧବୀ ମକରନ୍ଦ ପ୍ରଭୃତି ବିକାଶ ହେଲେଣି । ତୁଷାର ନାଶ ଦେଖି ପଙ୍କଜ ଆନନ୍ଦରେ ହସିଲଣି । କନ୍ଦର୍ପ ଫୁଲର କାର୍ମୁକ ଓ ବିଶିଖ ଧରି କାମୁକ ନିକଟକୁ ଗଲଣି ।

ଅଛ ରସ ମୟ — ବସନ୍ତ ସମୟ
ବିଚିତ୍ର ପ୍ରମେୟ ତାହାର
ମିତ୍ର ଅନଙ୍ଗକୁ — ପ୍ରବଳ କରାଇ
ଆଚରି ଚର୍ଚ୍ଚ ବିହାର
ଅଶୋକେ, ଆରୋହିଲ ନାଗେଶ୍ୱରକୁ
ଋତୁରାଜ ସହୁଁ — ସେପଦ ଘେନିଲ
ଗୃହି ପ୍ରଫୁଲ୍ଲ କେଶରକୁ
ରୁଚି ପତ୍ର ସୂଚୀ — ଆବରଣ ମଧ୍ୟେ
ସାଧ୍ୱୀଗୁଣ ଘେନି ପଶିଲ
ନବ ପୁଷ୍ପବତୀ — ସେବତୀ ସଙ୍ଗତେ
ଆସି କ୍ରୀଡ଼ାକୁ ପ୍ରକାଶିଲ
ମନୋଜ, ଶତ୍ରୁପୁର ମଧ୍ୟ ଚଉରେ
ଉଦିତ କରାଇ — ଚିତ୍ତ ଅନୁରାଗ
ଅଙ୍ଗାର ଖେଳେ ସେ ସନ୍ତରେ
ମଧୁ ବନ୍ଧୁ ଜଣେ — ମଳୟ ଶୀତଳ
ମଳୟ ଅନଳ ବହିଲ

ସଲିଳେ ମଜ୍ଜି ପଦ୍ମିନୀ ଗୁରୁ ଜାତି
ଦକ୍ଷିଣ ସ୍ୱଭାବେ ମୋହିଲ
ତା ଜାଣି, ବନଭବନେ ଯେ ଆବେଶ
ତରୁ ଲତା ଶ୍ରେଣୀ ତରୁଣ ତରୁଣୀ
ସମସ୍ତେ ସୁମନ ସୁବେଶ । କୋ. ବ୍ର. ସୁ.

କୋଟୀ ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟର ନାୟକ ପୁଷ୍ପକେତୁ, ବନ ବିହାର କରୁଥିବା ବେଳେ ବସନ୍ତ ଋତୁର ବର୍ଣ୍ଣନା କରାଯାଇ ଅଛି । ଅତି ରସମୟ ବସନ୍ତ ସମୟ, ତାହାର ସମସ୍ତ ବିଟପ ଜନକ ଓ ମିତ୍ର ଅନଙ୍ଗକୁ ପ୍ରବଳ କରାଇ ଫଗୁ ଖେଳ ଆରମ୍ଭ କଲା । ବସନ୍ତ କାଳ ଋତୁରାଜ ହେତୁ ରାଜପଦ ଗ୍ରହଣ କରି, ରାଜାପରି ନାଗେଶ୍ୱର-ଶ୍ରେଷ୍ଠ ହସ୍ତୀ ଆରୋହଣ କଲାପରି ଦେଖାଗଲା । ନାଗେଶ୍ୱର ବୃକ୍ଷରେ ପ୍ରସ୍ଫୁଟିତ ନାଗେଶ୍ୱର କେଶରକୁ ବୃନ୍ଦ ପରୋକ୍ଷରେ ଫଗୁ ଖେଳ ଆରମ୍ଭ କଲା । ପତିବ୍ରତା ରମଣୀମାନଙ୍କର ଗୁଣ ଗ୍ରହଣ କରି, କେତକୀ ପୁଷ୍ପ ସୂଚୀଯୁକ୍ତ ପତ୍ର ଆବରଣ ହୋଇ ଲୁଚି ରହିଲା । ପତ୍ର କଣ୍ଟକଯୁକ୍ତ ହେତୁ ଭ୍ରମର କେତକୀ ପୁଷ୍ପରେ ପ୍ରବେଶ କରି ପାରେ ନାହିଁ । ନବ ପୁଷ୍ପବତୀ ସେବତୀ ପୁଷ୍ପ ସହିତ କ୍ରୀଡ଼ା ଆରମ୍ଭ କଲା । କନ୍ଦର୍ପ ଚିତ୍ତ ରୂପକ ଅଗଣାରେ ଉଦୟ ହୋଇ, ଆସକ୍ତ ଓ ଅନୁରାଗ ରୂପକ ଅମ୍ବରରେ ବସନ୍ତ ଶୀଘ୍ର ଖେଳ ଆରମ୍ଭ କଲା । ମଧୁକାଳର ବନ୍ଧୁ ଭାବରେ ମଳୟ ଗିରି ନିବାସୀ ଅନିଳ ବହିଲା । ସଲିଳରେ ବୁଡ଼ି ରହିଥିବା ପଦ୍ମିନୀ ପ୍ରଭୃତି ଗୁରୁ ଜାତି ପୁଷ୍ପ କ୍ରୀଡ଼ାରେ ମଗ୍ନ ହେଲେ । ପଦ୍ମିନୀ ପ୍ରଭୃତି ଗୁରୁ ଜାତି ସ୍ତ୍ରୀ ହେଲେ । ସେମାନଙ୍କୁ ଦକ୍ଷିଣ ନାୟକ ରୂପେ ମୋହିତ କଲା । ଏହା ଜାଣି ତରୁ ଲତା ଶ୍ରେଣୀ ଯୁବକ ଓ ଯୁବତୀ ପରି ପୁଷ୍ପରେ ଭୂଷିତ ହେଲେ ।

ବସନ୍ତ ସମୟ                                    ଅତି ରସ ମୟ
ରଭସ ପ୍ରବେଶ ଅସି ଯେ,
ବଦ୍ରୁମ ଛବ                                    ସୁଦ୍ରୁମ ଲତା ଘବ
ପଲ୍ଲବେ ଫଗଗ ଦଶି ଯେ,
ବକସି ବକଶି କୁସୁମ ମାନ ଯେ
ହୋଇଲେ ଜବ                                    ନବ ପୁଷ୍ପବନ୍ତ
ଘବ ରସ କଲେ ଦାନ ଯେ        ବୈ. ବ.

ଅତି ମନୋହର ବସନ୍ତ ସମୟ ହଠାତ୍ ଆସି ପୃଥିବୀରେ ପ୍ରବେଶ ହେବାରୁ ଉତ୍ତମ ବୃକ୍ଷ ଓ ଲତାମାନେ, ବର୍ଣ୍ଣରେ ପୋହଳା ସହ ସମାନ ହେବା ଭବ ନୂତନ ପତ୍ରମାନଙ୍କଦ୍ୱାର ରକ୍ତବର୍ଣ୍ଣ ଧାରଣ କଲେ । ପୁଷ୍ପ ସବୁ ଗହଳରେ ଫୁଟିଲେ । ପୁଷ୍ପବନ୍ତ ଯୁବତୀଗଣ ଯେଉଁପର ଯୁବକମାନଙ୍କୁ ଶୃଙ୍ଗାର ରସ ଦାନ କରନ୍ତି ସେହିପର ଲତାମାନେ ନୂତନ ପୁଷ୍ପ ଧାରଣ କର ଭ୍ରମରମାନଙ୍କୁ ପୁଷ୍ପରସ ପ୍ରଦାନ କଲେ ।

ଚହକ ଅମଳ ଲତା ପ୍ରଫୁଲ୍ଲ
ଚଳାଇଲାଣି ସଧୀର ଅନଳ
ଚପଳା ଜବା ମଣ୍ଡି ବକଶିତ
ଚୂଷିବାପାଇଁ ଦମ୍ଭ ଉତପାତ ସେ
ଚଇଣ ଋତୁ ମୁକୁଟ ଯେ
ଚର୍ଚ୍ଚି ଖେଳ                                    ଫଗୁ ପତନ ପଲ୍ଲବେ
ରୁଚିର ରଙ୍ଗଣୀ ଫୁଟ ଯେ,
ଚମ୍ପକରେ ଧୃତ                                    ମାଧବୀ ମଲ୍ଲୀ
ଚହଟେ ଗନ୍ଧ                                    ମକରନ୍ଦ ଗଳ

ଚଟତାଇ ଭୃଙ୍ଗ ପ୍ରିୟ ଆନ ମେଳ
ଚନ୍ଦ୍ରାର୍ଥୀ ଗ୍ରାମକ ଚେତଇ ଜଳ ସେ
ଚମତକାର ମାଳତୀ ଯେ
ଚେଳ ଦରିସ୍ତୁ ବେଷ୍ଟିତ ପୁନ୍ନାଗରେ
କାନ୍ତା ଲକ୍ଷିତ କ ପତି ଯେ ।

ଋତୁରାଜ ବସନ୍ତ ଆଗମନରେ ବନ ଉପବନରେ ସମସ୍ତ ଲତା ସୁନ୍ଦର ଦେଖାଗଲେ । ମଳୟାନିଳ ସଧୀରେ ବହିଲା । ମନୋହୁଏ ପୃଥ୍ୱୀରେ ଚପଳା ପରି କୁସୁମସମୂହ ଦେଖାଗଲେ । ଏହି ତେଜ ଦମ୍ଭରୂପ ଉତ୍ପାତକୁ ଚୂର ଦେବକ । ଏହି ହେତୁ ଚଇତ ଋତୁ ମୁକୁଟ ହେଲା । ବସନ୍ତ ଆଗମନ ହେତୁ ପୁଷ୍ପ ପରାଗ ଉଡ଼ି ଫଗୁ ଖେଳ ପରି ହସିଲା । ରଙ୍ଗଣୀ ଫୁଲ ମଧ୍ୟ ଫୁଟିଲା । ବକୁଳ ମାଧବରୁ ମକରନ୍ଦ ଚଳ ଚତୁର୍ଦ୍ଦିଗରେ ସୁବାସ ବିକରଣ କଲା । ପୁନ୍ନାଗ ଲତାରେ ମାଳତୀ ତେଳ ଦରପ୍ରେ ହସିଲା । ପତି ଲକ୍ଷ୍ୟରେ ଏପରି ହେଉଥିବା ଜଣା ଯାଉଅଛି ।

ସୁରଭି ସମ ଏ ହୋଇଛି ଅତି ସୁରଖି ହୋଇ
ଅତି ସୁରଭି ଏ ବକୁଳ ଧରି ଅଛନ୍ତି ତହିଁ ।
ପିକ କୁହୁ କୁହୁ କରେ ଯେ ତରୁ ଡାଳରେ ବସି
କାମ କୁହୁ ଘୋଟି ଯାଇଛି କାମ ଚିତ୍ତରେ ଆସି
ମଧୁ ମତ୍ତ ହୋଇ ମଧୁପ କରୁ ଅଛନ୍ତି ସ୍ୱନ
ମାର ହୁହାଉଛି ହରେକ ଲୋହ ବାଟୁଳି ମାନ
ବହୁ ଅଛି ମନ୍ଦ ପବନ ଦହୁ ଅଛି ବିଦେଶୀ
ଦକ୍ଷିଣୁ ଆସିଛି ଯେଣୁ ଏ ଅଗ୍ନି ବଦନେ ପଶି
ହୁଁ ହୁଁ ଶବ୍ଦ କରୁ ଅଛନ୍ତି ମତ୍ତ କପୋତ ବନେ
ବିପକ୍ଷିତ ରତି ତୋଷି ଅଛି ରସିକ ଜନେ ।

ଲତାତରୁ ଧରି ଅଛନ୍ତି — ଗୁରୁ ତରୁଣୀ ଭ୍ରାନ୍ତ
ଅଧର ନବୀନ ପଲ୍ଲବ — ଫୁଲ ହାର ସଙ୍ଗତ
ବସନ୍ତ କାନ୍ତ ଅଶ୍ଳେଷରେ — ହୋଇଛନ୍ତି ଉଲ୍ଲାସ
ରସ ବରଷା କରୁଛନ୍ତି — କରୁଁ ଦିଗନ୍ତ ବାସ. ରଂଳେ

ସୂରଖ୍ୟ—ବସନ୍ତକାଳ ଓ ସୁନ୍ଦର । ବସନ୍ତ କାଳ ଅତି ସୁନ୍ଦର ହୋଇ ଆସିଲା । ବକୁଳ ପୁଷ୍ପ ଅତି ସୁନ୍ଦର ଭାବେ ରହିଛି । ବସନ୍ତ କାଳ ପ୍ରବେଶ ହେବାରୁ କୋକିଳ ତରୁ ଡ଼ାଳରେ ବସି କୁହୁ କୁହୁ ରବ କଲା । ଚତୁର୍ଦ୍ଦିଗରେ କାମ କୁହୁଡ଼ି ଘୋଟିଲାପରି ଦେଖାଗଲା । ଏ ହେତୁ କାମ ଶରରେ ଆସି ରହିଲା । ମଧୁପ—ଭ୍ରମରମାନେ ମଧୁ ପାନ କରି ମତ୍ତ ହୋଇ ଗୁଣୁ ଗୁଣୁ ସ୍ୱନ କରୁଅଛନ୍ତି । ଭ୍ରମରମାନେ ଉଡ଼ ଉଡ଼ ଫୁଲରେ ବସିବା ବେଳେ ମନେ ହେଉଛି କାମ ଲୌହ ବାଟୁଳି ପ୍ରହାର କରୁ ଅଛିକି ? ମନ୍ଦ ମଳୟ ପବନ ବହି ବିଦେଶୀ ମାନଙ୍କୁ ଦହୁଛି । ଦକ୍ଷିଣ ଦିଗରୁ ପବନ ବହି ଅହି ମୁଖରେ ପଶିଲା । ବନରେ ମତ୍ତ କପୋତ ଶ୍ରେଣୀ ହୁଁ ହୁଁ ଶବ୍ଦ କରୁ ଅଛନ୍ତି । ରସିକ ଜନମାନଙ୍କୁ ବିପରୀତ ରତି ଚେତାଉ ଅଛନ୍ତି । ତରୁ ଓ ଲତାମାନେ ସୁନ୍ଦର ଦିଶୁଥିବାରୁ ତରୁଣୀମାନଙ୍କ ହୃଦପୁରେ ଭ୍ରାନ୍ତ ଜାତ ହେଉଅଛି । କାରଣ, ତରୁଣୀମାନଙ୍କ ଅଧର ନବପଲ୍ଲବ ପରି ଦୃଶ୍ୟ ହେଲା । ଫୁଲ ହାରଗୁଡ଼ିକ ଲତାରେ ଫୁଟିଲା ପରି ଦିଶିଲା । ବସନ୍ତ କାନ୍ତ ଉଲ୍ଲାସରେ ଉଲ୍ଲସିତ ହୋଇଅଛି । ଚତୁର୍ଦ୍ଦିଗରୁ ସୁବାସ ପ୍ରସରି ରସ ବରଷା ହେଉଅଛି ।

## ଗ୍ରୀଷ୍ମ ଋତୁ

ଶୁଣହେ ସାଧବ ମାଧବ ଶେଷେ ଝିଲିକା କହି
ଏ ଗ୍ରୀଷମ ଋତୁ ବିଷମ ସମ ନୁହନ୍ତି କେହି ।

ସତ ଏ କିରଣ ମାନରୁ ଜାତ ଗାତ୍ରରୁ ସ୍ୱେଦ
ଭାନୁ ବୃହଦ୍ଭାନୁ ଯା ଯୋଗୁଁ କଲେ ତେଜସ୍ୱୀ ବାଦ
ପ୍ରଭାକୁ ପ୍ରକାଶେ ଆକାଶେ ପ୍ରଭାକର ଦିବସେ
ଜଳେ କୃଶାନୁ ସାନୁ ମାନଙ୍କରେ ଅନିଶେ ।
ଧରଣୀ ସରଣୀ ଧୂଳି କି କଲା ତପତ ତହିଁ
ପଥିକ ଦେ ବିପଦକୁ ପଦ ପଦ କେ ଦେଇ
ମନ୍ଦ ରଚନ୍ତି ମିହ ବହ୍ନି ତୁମ୍ଭେ ମନ୍ଦ କରୁଛ
ଆହେ ବିଶ୍ୱବସୁ କବଣୁଁ ସଂସାରକୁ ଦହୁଛ । କୋ· ବ୍ର· ସୁ·

ବସନ୍ତ ଋତୁ ଶେଷରେ ଗ୍ରୀଷ୍ମ ଋତୁ ପ୍ରବେଶ ହେଲା ବୋଲି ଝିଲିକା କହିଲା । ମାତ୍ର ଏହି ଋତୁର ସମାନ କେହି ନୁହନ୍ତି । ଏହି ଗ୍ରୀଷ୍ମ ଋତୁର କିରଣ ମାନେ ଗାତ୍ରରୁ ସ୍ୱେଦ ନିର୍ଗତ ହୋଇଥାଏ । ଏହି ତାପରୁ ଜଣାଯାଏ ଯେ ଭାନୁ ଓ ବୃହଦ୍ଭାନୁଙ୍କର ବିବାଦ ହେଉଅଛି । ପ୍ରଭାକର-ସୂର୍ଯ୍ୟ ଦିବସରେ ଆକାଶରେ ପ୍ରଭାକୁ ପ୍ରକାଶ କରୁଅଛି । ଅଗ୍ନି ପର୍ବତମାନଙ୍କରେ ଅନବରତ ଲାଗି ରହିଥାଏ । ପୃଥିବୀରେ ଥିବା ବାଲୁକା ରାଶି ସୂର୍ଯ୍ୟ କିରଣରେ ଅତି ଉତ୍ତପ୍ତ ହେଲା । ପଥିକମାନେ ପଥରେ ଚାଲି ନପାରି ବିପଦ ମଣିଲେ । ଉତ୍ତାପରୁ ବାରଣ ନିମିତ୍ତ ଛତା ଓ ଜୋତା ବ୍ୟବହାର କଲେ । କାକ ସମୂହ ରଡ଼ି କରି କହନ୍ତି ହେ ସୂର୍ଯ୍ୟ ଓ ଅଗ୍ନି କାହିଁକି ପୃଥିବୀକୁ ଧ୍ୱଂସ କରୁଅଛ ! ଭାନୁ ଓ ବୃହଦ୍ଭାନୁ ନାମକରଣର ତାତ୍ପର୍ଯ୍ୟ ଏହା ହୋଇ ପାରେ । ଅଗ୍ନି ଓ ସୂର୍ଯ୍ୟଙ୍କର ପ୍ରଚଣ୍ଡ ତାପରେ ପୃଥିବୀ ଓ ପୃଥିବୀର ସମସ୍ତ ପ୍ରାଣୀ କଷ୍ଟ ପାଇବା ଦେଖି ପିତାମହ କହିଲେ, ହେ ବିଶ୍ୱବସୁ ହସ୍ତୁ ତୁମ୍ଭେ ଶାନ୍ତ ହୁଅ । ଦୁଇ ଜଣ ନ ଶୁଣିବା ହେତୁ ବ୍ରହ୍ମା

ଇନ୍ଦ୍ରଙ୍କୁ କହିଲେ ମେଘ ସୃଷ୍ଟି କରି ବର୍ଷା କରାଅ । ବର୍ଷା ହେବାରୁ ସୂର୍ଯ୍ୟଙ୍କର ତେଜ ହ୍ରାସ ହେଲା । ବନ ପର୍ବତାଦିରୁ ଅଗ୍ନିଙ୍କର ତେଜ ଶାନ୍ତ ହେଲା । ଏହା ଦେଖି ବ୍ରହ୍ମା କହିଲେ ଦୁଇଙ୍କର ତେଜତ କମିଗଲା, ଏଥର ଶାନ୍ତ ହୁଅ । ଏହା ଦେଖି ଅଗ୍ନି କହିଲେ, ହେ ପିତାମହ ମୋତେ ତ ଅଧିକାର ଦେଇ ଅଛନ୍ତି । ବରଷାର ବରଦାଗ୍ନି ଭାବରେ ରହିବ । କ୍ରୋଧୀର କ୍ରୋଧାଗ୍ନି ଭାବରେ ରହିବ । ଆପ[illegible] ମେଘ ସୃଷ୍ଟି କଲେ ମଧ ବିଦ୍ୟୁତ୍ ଅଗ୍ନି ଭାବେ ମେଘରେ ରହିବ ଓ ରହିଛି । ଏହା ଦେଖି ବ୍ରହ୍ମା କହିଲେ, ହେ ଅଗ୍ନି ତୁମ୍ଭେ ଯାହା କହିଲ ତାହା ଠିକ୍ । ଏଣୁ ତୁମ୍ଭେ ବୃହଦ୍ଭାନୁ ଅଟ । ଏକଥା ହୃଦୟଙ୍ଗମକରି କବି ଓ ମହାକବି ମାନେ ଅଗ୍ନିକୁ ବୃହଦ୍ଭାନୁ ଓ ସୂର୍ଯ୍ୟଙ୍କୁ ଭାନୁ ବୋଲି କହି ବର୍ଣ୍ଣନା କରି ଅଛନ୍ତି । ଗ୍ରୀଷ୍ମଋତୁର ସମାନ କେହିନୁହନ୍ତି ବୋଲି ଲେଖାଯାଇ ଥିବାରୁ ଜଣାଯାଏ ମହାକବି ଉପେନ୍ଦ୍ର ତତ୍ତ୍ୱ ଦର୍ଶୀ ଥିଲେ । କାରଣ, ଅତି ଉତପ୍ତ ହେତୁ ପୃଥ୍ୱୀରେ ଥିବା ଜଳରାଶି ଶୁଖିଯାଇ ମେଘ ସୃଷ୍ଟି ହୁଏ । ମେଘ ହେଲେ ବର୍ଷା ହୁଏ । ବର୍ଷା ହେଲେ ନାନାଦି ଶସ୍ୟ ହୁଏ । ଏହି ଶସ୍ୟ ଗ୍ରହଣ କରି ପ୍ରାଣୀମାନେ ପ୍ରାଣ ଧାରଣ କରନ୍ତି । ଏଣୁ ଗ୍ରୀଷ୍ମ ଋତୁର ସମାନ କେହି ନୁହନ୍ତି ବୋଲି ଲେଖା ଯାଇ ଥିବା ଯଥାର୍ଥ ଅଟେ ।

ଗ୍ରୀଷମ ସମୟ ପ୍ରବେଶ ହୋଇଲା
ନବ୍ୟନାଦୃତ ପ୍ରକାର
ତତ ସଙ୍ଗତେ ଶୁଆଇ ଚନ୍ଦ୍ରକରେ
ଲାଜ କରିଲା ଦୂର
ବରହ୍ମା ଚତା ପରିପ୍ଲୁ ଦଶେ ଦଶେ
ଦହିଲେ ବନ ଅନଳ

ରଜନୀକର ପବନ ବହି ଦେବ
ଧୂପକୁ କଲା ଆକୁଳ
ସରିତ ହୋଇଦେ ଜରଣା ପରାଏ
ଘନ ରସ ବର୍ଷଣରେ
ରସିକ ରସାଧବ ପ୍ରାପ୍ତ ସରସୀ
ମହିଷ ଆଲିଙ୍ଗନରେ

କୋ. ବ୍ର. ସୁ.

ନୟନା ଦୃଷ୍ଟି ପରି ଗ୍ରୀଷ୍ମ ଋତୁ ପ୍ରବେଶ ହେଲା। ଦୃଷ୍ଟି ସ୍ତ୍ରୀ ପୁରୁଷମାନଙ୍କ ମନକୁ ଭୁଲାଇ କହିଲା ପରି ଖରା କାଳ ଲୋକଙ୍କୁ ଭୁଲାଇଲା। ଖରା ହେତୁ ମନ ଅଥୟ ହେଲା; ଚନ୍ଦ୍ର କିରଣରେ ପତ୍ନୀ, ପତି ସହିତ ଶୟନ କରିବାରୁ ନିଜ ଦୂର ହେଲା। ଅତି ଗ୍ରୀଷ୍ମ ହେତୁ ଦେହରେ ଲୁଗା ରହି ପାରିଲା ନାହିଁ। ଦାବାନଳ ବରହି ଶିଖା ପରି ଚତୁର୍ଦ୍ଦିଗରେ ଦେଖାଗଲା।

ଦେବ ଧୂପ-ଆଷି ପବନରେ ଧୂଳିଉଡ଼ି ଆଷିକୁ ଆକୁଳ କଲା। ଖରା ଦିନେ ପୋଖରୀରେ ମହିଷୀ ମାସେ ପଡ଼ି ଧାଣ୍ଡି ହେଲା ପରି ରସିକ ରାଜାମାନେ ରସ ଆଶାରେ ରାଣୀମାନଙ୍କୁ ଆଲିଙ୍ଗନ କଲେ। ଏ ଗ୍ରୀଷ୍ମ କାଳ ବଡ଼ କଷ୍ଟଦାୟକ ହେଲା। ଖରା କାଳରେ ନଦୀ ସମୂହ ଜଳହୀନ ହେତୁ ଶୁଖିଲା ରହିଲା।

## ବର୍ଷାଋତୁ

ଦେଖି ନବ କାଳିକା ବକାଳିକା ମାଳିକା
ଆଳି କାଳିନ୍ଦୀ କାନ୍ତ ସୁନ୍ଦରି
ରକ୍ଷା କେମନ୍ତ କର କରିବା ମନ୍ତ୍ର କର
ଗଡକ ଏମନ୍ତ ବରୁରି ସେ ସହିତଷ୍ଟ

ଯିବେ ବଞ୍ଚିଲେ ଏ କାଳକୁ
କଥା ଥିବ କାଳ କାଳକୁ

ଏକେତ କ୍ଷୀଣ ଧନ ହେଲା ଦୁର୍ଦ୍ଦିନ ଧନ
ନ ଲଭୁଁ ବଲ୍ଲଭ ମେଳକୁ ସେ ,
ହିତ ଅନ ମାନଙ୍କୁ ସତ କାମିଜନଙ୍କୁ
ଅହି ପବ ଅହିତ ଏହି

ହତ କୃଶାନୁ ସାନୁ- ମାନରୁ ଘନୁ ଘନୁ
ତା'ପରୁ ନିସ୍ତରନ୍ତି ମହୀତେ,ସନ୍ଧେତଶ୍ରୀ
ବରହୀକକ ହୃଦ ସ୍ଥଳେ

ଜଳେ ସେ ହତ ନୋହେ ଜଳେ
କରୁଛି ଜାତ ଜାତ- ବେଦକୁ ସତ ଶତ

-ହୃଦାଞ୍ଚଳରେ ଘନ କୋଳେ ରେ ବର୍ଷାକାଳ ଆଗମନରେ ନୂତନ ମେଘ ଦେଖି ଲବଣ୍ୟବତୀର ସଖୀମାନେ ବିଚାର କରୁଅଛନ୍ତି । ନୂତନ କଳା ମେଘ ମାଡ଼ିଥିବା ବେଳେ ଆକାଶରେ ବକ ପନ୍ତି ଉଡ଼ନ୍ତି । ନୂତନ ମେଘ ଓ ବକ ପନ୍ତି ଦେଖି, ଲାବଣ୍ୟବତୀର ସଖୀମାନେ କାଳିବା କାନ୍ତଙ୍କୁ ସ୍ମରଣ କଲେ । ନୂତନ ମେଘ ଓ ବକ ପନ୍ତି କାମର ଉଦ୍ଦୀପ୍ତ କାରକ । କାଳିବା କାଣ୍ଡିତ କନ୍ଦର୍ପକୁ ଧ୍ୱଂସ କରିଥିଲେ ଏଣୁ କାଳିକା କାନ୍ତଙ୍କୁ ସ୍ମରଣ କରିବା ଯଥାର୍ଥ । ମତ୍ତକରି ଗତି ଲାବଣ୍ୟବତୀକୁ କପରି ରକ୍ଷା କରିବା । ଏହି ସମୟରେ ଯଦି ଅମ୍ଭେମାନେ ରକ୍ଷା କରି ପାରିବା ତା ହେଲେ କାଳ କାଳକୁ କଥା ରହିବ । ଆମ୍ଭର ଜେମା ପତି ସଙ୍ଗ ହୋଇ ନାହିଁ । ଏହି ସମୟରେ ଧନ କ୍ଷୀଣ ଅଟେ । ଆମ୍ଭର ଜେମା ଅତ୍ତୁର କ୍ଷୀଣ

ହୋଇଯିବ । କାମୀଜନଙ୍କ ଛଡ଼ା ସମସ୍ତଙ୍କୁ ହିତ ହେବ । ବର୍ଷାକାଳ ହେତୁ ବନପର୍ବତରେ ଲଗିଥିବା ଅଗ୍ନି ନିର୍ବାପିତ ହେଲା, ସୂର୍ଯ୍ୟ ତାପରୁ ମଧ୍ୟ ଉଦ୍ଧାର ହେଲା, ଅର୍ଥାତ୍ ଶୀତଳ ହେଲା । କିନ୍ତୁ ହୃଦୟରେ ବିରହାଗ୍ନି ଭାବେ ଅଗ୍ନି ରହିଲା । ସେ ଅଗ୍ନି ଲିଭିଲା ନାହିଁ ବରଂ ଅଧିକ ଜଳି ଉଠିଲା । ପାଣିରେ ମଧ୍ୟ ଅଗ୍ନି ଅଛି । ଏହା ବଡ଼ବାଗ୍ନିରେ ଖ୍ୟାତ । ଆହୁରି ଶତାହ୍ରଦା—ବିଜୁଳି ଛଳରେ ମେଘରେ ଦେଖାଦେଲା ।

ଝଞ୍ଜାପବନ

ଯେଉଁ ସୁନ୍ଦରୀ ଦଶ— ଭୂତରୁ ଗଣ୍ଡୁଧର
ଧରଣୀ ଶୟନ କରିଛି ।
କଟିଣୁ ଯୌବନ ବନ ପୂର୍ଣ୍ଣନୟନ ଘନ—
ଘନ ନିଃଶ୍ୱ ସକୁ ଗୁଡ଼ୁଛିରେ
ସଦ୍ଧରର
ପକାଇ ଆପଣା ଅଙ୍ଗର
ଲେଉଟେଲ ନଲଗଇ କର
ଯେହୁଏତେ ଦୁର୍ବଳ ଝଞ୍ଜାନିଳ ପ୍ରବଳ
ଉଡ଼ାଇନିଅ ଯତ୍ନକରରେ ଲୋଭ

ବର୍ଷାକାଳ ହେତୁ ଲାବଣ୍ୟବତୀ କାମଆତୁରରେ ଗାଲରେ ହାତ ଦେଇ ଭୂମିଉପରେ ଶୟନ କରିଅଛି । ତାର ପ୍ରାଣ ମଧ୍ୟ କଣ୍ଠାଗତ ପରି ଜଣାଯାଉଅଛି । ନୟନରେ ଲୁହପୂର୍ଣ୍ଣ ହୋଇଛି । ଘନ ଘନ ନିଶ୍ୱାସ ବାହାରୁ ଅଛି । ତା ଦେହରେ ହାତ ଦେଲେ ଜୀବନ ଅଛିକି ନାହିଁ ଜଣା ଯାଉ ନାହିଁ । ସେ ଅତି ଦୁର୍ବଳ ହୋଇ ଅଛି । ଝଞ୍ଜାପବନ ବହିଲେ ଅନିଷ୍ଟ ହୋଇପାରେ । ଏଣୁ ଯତ୍ନ କରିବା ଆବଶ୍ୟକ ଅଟେ । ବର୍ଷା କାଳରେ ଝଞ୍ଜା ପବନ କାମୋଦ୍ରେକ କାରକ ।

## ବଜ୍ରପାତ

ଯୋଉଁ ଘଟକୁମାର        ଚନ୍ଦ୍ର ଘଟ କୁମାର
ପିକ ଡ଼ାକକୁ ଶୁଣି ଯେଣ୍ଟ
ଏ ନାଦ ସହ୍ଯ ସହ୍ଯ        ହୋଇ ମହା ବିରହୀ
ରହିବଟି ଜୀବନେ କେହିରେ
ସହଚରି
ଘନାଡ ବେଳେ କଣ୍ଠେକର
ଦେବା ତା ଏ ଉପାୟ କର
ପୟୋଧରକୁ ଧର        ବିଚାର ପୟୋଧର
ଗ୍ରାସେଟି ପୂର୍ବୋଦରେ ଉର ରେ        ଲ·ବ

ବିରହିଣୀ ଲବଣ୍ୟବତୀର ଦେହକୁ କନ୍ଦର୍ପ ଭେଦିବାରୁ ବର୍ଷାଋତୁର ପିକ ଡାକକୁ ମଧ୍ୟ ବଜ୍ର ପରି ମଣୁଅଛି । ବଜ୍ରପାତ ହେଲେ ଅଗସ୍ତିଙ୍କୁ ସ୍ମରଣ କରିବା ବିଧିଅଛି । ଅଗସ୍ତିଙ୍କ ନାମ ସ୍ମରଣରେ ବଜ୍ରପାତ ନହେବା କମ୍ବଦନ୍ତି ଅଛି । ଏଣୁ ବଜ୍ରପାତ ହେଲେ ଅଗସ୍ତିଙ୍କୁ ସ୍ମରଣ କରିବା । ବଜ୍ରପାତ ଶବ୍ଦ ଶୁଣି ଅତ୍ୟନ୍ତ ବିରହୀ ଲବଣ୍ୟବତୀ ପ୍ରାଣ ରଖି ପାରିବ ନାହିଁ । ମେଘ ଗର୍ଜ୍ଜନ ବେଳେ କାନରେ ହାତ

ଦିଅ ! ପର୍ବତ ରୂପକ ସ୍ତନକୁ ଧର । କାଳେ ମେଘ ଗ୍ରାସ କରିବ । (ପର୍ବତକୁ ମେଘ ଗ୍ରାସକରେ)

## ଭେକଶବ୍ଦ

ଏ ଦୁରନ୍ତ ଦର୍ଦ୍ଦୁର        ଚେତନାକରେ ଦୂର
ଦୂରୁ ଗର୍ଜି ଆନେ ପଡ଼

* ୧୫ *

କରମକୁ ଏହାର ହରହାର ଆହାର
ଗରୁଡ଼ କଲା କବା ଲୋଡ଼ରେ
ସହଚର
ଅରଜ ଅଛ ଏ ଉତ୍ସବ
ଗରଜ ଗରଜ ମଶବ
କେ ହେବ ଏ ବରଦ ହୋଇ ସିଂହ ଶରଦ
ମାରଦ ଦ୍ୱିରଦ ଗଞ୍ଜୀବରେ

ଏହି ଦୂରନ୍ତ ବେଙ୍ଗଗୁଡ଼ିକ ରଡ଼ି କରୁଅଛନ୍ତି । ଅନ୍ୟ ସ୍ଥାନରେ ବଜ୍ର ପଡ଼ୁଛି ପିନା, ଏମାନଙ୍କ ଉପରେ ପଡ଼ୁନାହିଁ କାହିଁକି । ଅ.ମ୍ଭ ଲାବଣ୍ୟବତୀର କରମକୁ ସର୍ପକୁ ଗରୁଡ଼ ଲୋଡ଼ି ଆହାର କଲାକ ? ସେମାନେ ଥିଲେ ବେଙ୍ଗକୁ ଖାଇ ଦିଅନ୍ତେ । ଅର୍ଥାତ୍ ବେଙ୍ଗମାନେ ଆଉ ରଡ଼ି କରନ୍ତେ ନାହିଁ । ଏହି ମେଘ ଗରଜ ମଶବ । ଶରତ କାଳ ସିଂହ ପଶ ପ୍ରବେଶ ହୋଇ ହସ୍ତୀ ସ୍ୱରୂପ ବର୍ଷା କାଳକୁ ଗ୍ରାସ କରିଦେବ ।

ମୟୂର ନୃତ୍ୟ

ଦେଖ କେକୀ କଲାପ ନାଚେ ଠେକ କଲାପ
ବିପ୍ରଲାପ କରୁଛି କେତେ
ଏହାର କି ଲବଧ କରି ଅବଧ ବଧ
ବ୍ୟାଧଙ୍କୁ କହିବାକ ହବେ ରେ
ସହଚରି
ପର୍ଣ୍ଣିବାଡ଼ ଲଗୁଡ଼ ପାଶ
ଘେନ କରନ୍ତୁ ବେଗେ ନାଶ
କରି ଯୁଥା ପହ ଗୋହ ବ୍ୟଜନ ଆତପଏ
ଦେବଙ୍କୁ ଦେବା ମନାସରେ ଲି·ବ

ବର୍ଷା କାଳରେ ମେଘକୁ ଦେଖି ମୟୂର ମାନେ ପୁଚ୍ଛ ଟେକି ନୃତ୍ୟ କରନ୍ତି, ଏବଂ ଘନଘନ ରବ କରୁଅଛନ୍ତି । ମୟୂର ନୃତ୍ୟ ଦେଖି ଓ ରବ ଶୁଣି ଆମ୍ଭ ସଜନୀ ସହି ପାରବ ନାହିଁ । ଯେଉଁ ନାରୀ ଅବଧ୍ୟ, ତାକୁ ବଧ କରିବାକୁ କାହିଁକି ଇଚ୍ଛା କରୁଅଛ । ଏଣୁ ଅନେକ ବ୍ୟାଧକୁ କହି ମାରି ଦେବାକି ? ବ୍ୟାଧଙ୍କୁ କହିବା ପର୍ଣ୍ଣବାଡ଼ି ଲଗୁଡ଼ି-ବାଡ଼ି ପାଶ ଧରି ମାରି ପକାଅ । ମାଇଲା ପରେ ମୟୂର ପୁଚ୍ଛ ଆଣି ବିଞ୍ଚଣା ଓ ଛତା ତିଆରି କରି ଦେବତାଙ୍କୁ ଦେବା ଏପରି ମନାସ କରି । ମୟୂର ନୃତ୍ୟ ଓ ରବ କାମର ଉଦ୍ଦୀପନକାରକ ।

ବିଦ୍ୟୁତ୍

ବିଷ୍ଣୁପଦ ଲୀନ ହେବାରେ ଚଞ୍ଚଳା
ଜ୍ୟୋତି ପ୍ରକାଶି କଲା ଲୀଳା
ବିଷକଣ୍ଠ ସୁଖେ ବିଳସେ କୁଳଶେ
ଗିରିଜା ସଙ୍ଗାତ ହୋଇଲା
ବିଲେକନେ ଯେ
ବିରସ ଯୋଗୀଏ ନୋହିଲେ
ବିକାଶ ପୁଟେଷ୍ଟ ସୁଜାତି ସୁମନାଏ
ମଧୁପ ମନକୁ ମୋହିଲେ

ଦୈବ

ବିଷ୍ଣୁପଦ ଆକାଶ ମେଘାଚ୍ଛନ୍ନ ହେବାରୁ ବିଜୁଳି ନିଜର ତେଜ ବିକାଶ କରି ଲୀଳା ଖେଳା କଲା ।

ବିଷକଣ୍ଠ-ଗୃହକମାନେ ଆନନ୍ଦରେ ବିହାରକଲେ । ଗିରିଜା ଗିରିଜାତ ଦ୍ରବ୍ୟ ପର୍ବତରେ ଜାତ ଶୃଙ୍ଗ ବା ବୃକ୍ଷଲତା ପ୍ରଭୃତି

ବଜ୍ର ଘାତରେ ବିନଷ୍ଟହେଲେ । କିମ୍ବା ଗିରିଜା–ନଦୀସମୂହରେ ନାନା–ପ୍ରକାର ମାଛରେ ପୂର୍ଣ୍ଣ ହୋଇ ଯିବାରୁ ବକପକ୍ଷୀମାନେ ଆନନ୍ଦରେ ନଦୀ ମଧ୍ୟରେ ବୁଲିବାକୁ ଲାଗିଲେ । ଏହି ବର୍ଷା କାଳକୁ ଦେଖି, ଯୋଗିଏ–ସ୍ତ୍ରୀସହବାସ କରିବା ବ୍ୟକ୍ତି ଦୁଃଖିତ ହେଲେ ନାହିଁ । କିନ୍ତୁ ବିଯୋଗୀ ମାନେ ଦୁଃଖ କଲେ । ବିଯୋଗୀ ସ୍ତ୍ରୀସହ ମିଶି ନପାରିବା ବ୍ୟକ୍ତି ଅର୍ଥାତ୍ ବିଦେଶୀ ଜାଇ ଓ ମାଳତୀ ଲତାରେ ପୁଷ୍ପ ବିକାଶ ହୋଇ ଅର୍ଥାତ୍ ପୁଷ୍ପବତୀ ହୋଇ ଭ୍ରମରମାନଙ୍କୁ ମୋହିଲେ ।

ବିରୋଧୀ ଭିଷ ପ୍ରକଟାଇ କବିରେ
ବରଷା ସମ୍ପ୍ରୁ ସଞ୍ଚରି
ବ୍ୟାପୀ ଶୋଭାଦିଗେ ଭୟଙ୍କର ଦିଶେ
ଗରଜେ ଘନାଘନ ହରି
ବିସର୍ଜ୍ଜଇ ଯେ
ବଡ଼ ଆନନ୍ଦରେ ଜୀବନ
ବିଧିରେ କାଳିକା ମହିଷ ସନ୍ତାପ
ନାଶି ପ୍ରମୋଦ କରେ ଦାତା
ବିଜନିତ କଲ୍ପ ଶ୍ୱାନ ଅବିରତ
ଚମକ ରଚିଲା ଶରଦେ
ଦ୍ୱିବୃତ ଦ୍ୱିଜ ବ୍ରଜରେ କଷଣକୁ
କରନ୍ତେ ପୁଣସେ ଆରମ୍ଭେ
ବୁଦ୍ଧିଶ୍ରବାର
ବାଣାସନ ଯେ ହୋଇ ଜାତ
ବିହିତ ବେହିତ ସ୍ୱରୂପ ଚରିତ
ନାକରେ ରଙ୍ଗେ ବିହରିତ ।

ବୈ.ବି

ବର୍ଷାଋତୁ ପ୍ରକାଶ ହେବାରୁ କବିଙ୍କର କଳ୍ପନା କଳ୍ପନା-ଜଗତରେ ବିରୋଧ ପରି ଜଣା ପଡୁଥିବା ବାକ୍ୟଗୁଡ଼ିକୁ ପ୍ରକାଶ କରାଇଲା । ବର୍ଷାଋତୁର ପ୍ରକାଶରେ ଏହି ଜଗତର ସମସ୍ତ ଅଂଶରେ ଶୋଭା ବିଚ୍ଛୁରିତ ହୋଇଗଲା । ଅର୍ଥାତ୍-ଜଳ-ସ୍ଥଳ-ଆକାଶ ସମସ୍ତେ ସୁନ୍ଦର ଦେଖାଗଲେ ଏବଂ ଭୟଙ୍କର ମଧ୍ୟ ଦେଖାଗଲେ । ମତ୍ତ ହସ୍ତୀ ସିଂହକୁ ଗ୍ରାସ କରିବାରୁ ସିଂହ ଆନନ୍ଦରେ ପ୍ରାଣ ତ୍ୟାଗ କଲା । କାଳିକା ଠାକୁରାଣୀ ମହିଷାସୁରର ଦୁଃଖ ହରଣ କରି ତାକୁ ଆନନ୍ଦ ଦାନ କଲେ । ଯେ ସୁନ୍ଦର ସେ ଭୟଙ୍କର ହୋଇ ନପାରେ । ହାତୀ ସିଂହକୁ ଗିଳିପାରେ ନାହିଁ କି ମରୁଥିବା ପ୍ରାଣୀ ଆନନ୍ଦିତ ହୁଏ ନାହିଁ ଏବଂ କାଳୀ ମହିଷାସୁରର ଦୁଃଖ ନାଶ କରି ତାକୁ ସୁଖ ଦେଇ ନଥିଲେ । ଏହି ସବୁ ବିରୋଧ କଥା କବି ପ୍ରକାଶ କଲେ ଓ ପ୍ରତ୍ୟେକ ପଦରେ ଏହିପରି କରିବେ ।

## ଟୀକ୍ତାର୍ଥ

ଘନାଘନ-ହଠାତ୍ ବର୍ଷା କରିବା ଉପଯୋଗୀ ମେଘ ଗୁଡ଼ିଏ ଆସି ଘୋଟି ଯିବାରୁ ନଭେ ସେହି ଘନା ଘନ ସୁନ୍ଦର ଦେଖାଗଲା । ଅର୍ଥାତ୍ ତାର ରୂପର ମାଧୁରୀ ଲୋକ ମାନଙ୍କ ମନରେ ଆନନ୍ଦ ଆଣିଦେଲା । ମେଘ ସମୂହରେ ଉଡ଼ୁଥିବା ବକପନ୍ତି ହସ୍ତୀର ଦାନ୍ତପରି ଦେଖାଗଲା । ଖଣ୍ଡ ଖଣ୍ଡ ଲାଲ ବର୍ଣ୍ଣର ମେଘ ଢ଼ାଉଁଚିହ୍ନ ପରି ଦେଖା-ଗଲା । ହସ୍ତୀକୁ ବେଶ କଲା ବେଳେ ମୁଣ୍ଡରେ ଗେରୁ କମ୍ବା ଢ଼ାଉଁରେ ଚିହ୍ନ କରି ଯାଇଥାଏ । ,ଏହି ମେଘ ରୂପକ ହସ୍ତୀ ଉପରେ ମାର ଭୁଲି ମାହୁନ୍ତ ଅଙ୍କୁଶ ଧରି ବସିଅଛି । ଯେହେତୁ ବର୍ଷାକାଳରେ କନ୍ଦର୍ପର ପ୍ରଭାବ ବେଶି ହୋଇ ଥାଏ । ନବୀନା ଯୁବତୀମାନଙ୍କ ପକ୍ଷରେ ଏହି ଋତୁ ସୁଖଦାୟକ ଏବଂ ଦୁଃଖଦାୟକ ମଧ୍ୟ ଅଟେ । ଏହି ପଦ ଓ ବାକ୍ୟରେ ଯମକ ଅନୁପ୍ରାସ ପ୍ରଭୃତି ଅଳଂକାର ବିଶେଷ ଅଛି ।

ଘେନି ଘନ କାଳ କଳ ମଣି ବିଦ୍ୟୁଜ୍ଜାଳ ଜାଲ
ଅଗ୍ନି ବୃଷ୍ଟି ମହୋଜ୍ଜ୍ୱଳ ଜଳ
ରସିକ ବିକଳ କଳ- ନାକ ବୋଲି ଚଳଚଳ
ପ୍ରିୟାପାଶେ ଖତ ମାଳ ମାଳ
ହେ ଜଳଧର
ଦମ୍ଭକୁ କମ୍ପା କଠାଳଠାଳ
ଦୁଃଖୀ ଅସମ୍ଭାଳ ହାଳ ହୃଦକ ହେଲା ସୁଶୀଳ
ଅଛି କୋହ୍ନି ଫାଳ ଫାଳ ହେ ପ୍ରେ·ସୁ

ପ୍ରେମ ସୁଧାନିଧି କାବ୍ୟର ନାୟକ ବର୍ଷାକାଳ ଦେଖି ବିଚାର କରୁଅଛି । ବିଜୁଳିମାନଙ୍କ ଜଳନ୍ତା ଅଗ୍ନି ଉଜ୍ଜ୍ୱଳ ଜଳ ଧାରା ବୃଷ୍ଟିକୁ ଅଗ୍ନି ବୃଷ୍ଟି ପରି ମଣିବାରୁ ତାହାର ବିକଳ କଳନା କରି ହେଉ ନାହିଁ । ସେ ରସିକ ବିଚାର କରୁ ଅଛି—ମୋ ଛାତି ଅତି ଟାଣୁଆ ପଥର ପରି ଅଟେ । ତେଣୁ ଫାଟିନଯାଇ ସମ୍ଭାଳି ହୋଇ ରହି ଅଛି ! ମେଘମାନଙ୍କୁ ଦେଖି ରସିକ କହୁଛି—ହେ ମେଘ! ତୁମ୍ଭର ଉଦୟ ଦେଖି ମୋର ଦୁଃଖ ଅସମ୍ଭାଳ ହୋଇ ଅଛି । ତୁମ୍ଭେ ଏକାଳରେ ମୋର ଦମ୍ଭକୁ କାହିଁକି ଭାଙ୍ଗି ଦେଉଅଛ ? ଏକଥା ବିଚାର କରି ମୋ ପ୍ରିୟା ପାଶକୁ ଯାଅ । ଏହି ଛାନ୍ଦରେ ମହାକବି କାଳିଦାସଙ୍କ ମେଘଦୂତର ପ୍ରଭାବ ପଡ଼ିଛି । ଦିଗମାନେ ଭୟଙ୍କର ଦେଖାଗଲେ । ଅର୍ଥାତ୍-ଅନ୍ଧାର ବ୍ୟାପିଯିବାରୁ ଲୋକମାନେ କେଉଁ ଦିଗକୁ ଯିବେ ବା ଯାଉଛନ୍ତି ଠିକ୍ କରି ନପାରି ଖିନ୍ନ ହେଲେ । ସେହି ସାନ୍ଦ୍ର ମେଘ ଚନ୍ଦ୍ର ଓ ସୂର୍ଯ୍ୟଙ୍କୁ ଗ୍ରାସକଲା ବା ଘୋଡ଼ାଇ ପକାଇଲା ଏବଂ ଅତିଶୟ ଆନନ୍ଦରେ ଜଳ ବିସର୍ଜ୍ଜନ କଲା । ଦୈବ ବଶରୁ ଅଥବା ବିଧାତାର ନିୟମାନୁସାରେ କାଳିକା—ମେଘ ବର୍ଷା ହେବାରୁ ମହିଷୀମାନଙ୍କର ଦୁଃଖ ନାଶ ହେଲା । ସେମାନେ ଆନନ୍ଦିତ ହେଲେ । ବର୍ଷା ହେବାରୁ

ଅନବରତ ଘଡ଼ ଘଡ଼ ଶବ୍ଦ ପ୍ରକାଶ ହେଲା । ଶରଭ-ଅଷ୍ଟପାଦମୃଗ କମ୍ପିବାକୁ ଲଗିଲା । ଅଥବା ସେହି ଶବ୍ଦ ଶୁଣି, ଗଧ ଚମକିବାକୁ ଲାଗିଲା, ପୁଣି ସେହି ମେଘରୁ କରକାପାତ ହେବାରୁ ବନଙ୍ଗମ ଗଣ ଆଘାତ ପାଇ ବହୁ କଷ୍ଟ ପାଇଲେ । ଭିକ୍ଷାମାଗି ନିକଟ ଗ୍ରାମରୁ ଫେରୁଥିବା ଭିକ୍ଷାଶୀ ବଡ଼ କଷ୍ଟ ପାଇଲେ । ଇନ୍ଦ୍ରଧନୁ ପ୍ରକାଶ ହେବା ସଙ୍ଗେ ବୋହିତ ରୂପକୁ ଧାରଣକରି ଆକାଶରେ ନାନାର-ଙ୍ଗରେ ବିହାର କଲା ।

କମ୍ପାଇ ଦେଇ ଗଗନ        କରେ ଘନ ଘନ
ଘନାଘନ ଘନଘନ ଚୁଣ୍ଡଯେ
ଡ଼ଳ ଡ଼ଳ ଦାନବାରି        ପ୍ରକାରେ ଯେ ଦାନବାରି
ଦାନ ବାରି ବରଗ ଫଣ୍ଡୁଣ୍ଡ ଯେ
ଡ଼ଳେ ଯେ ମାତଙ୍ଗ ବଶେ        ତଡ଼ିତ ପତାକା କସେ
ଦନ୍ତବଡ଼ ସତ ବକପନ୍ତି ଯେ
ତାଳ ଶବ୍ଦର ସମାନ        ଖଣ୍ଡ ଖଣ୍ଡ ରଙ୍ଗଘନ
ମାର ମାହୁନ୍ତକ କନ୍ଧେ ସ୍ଥିତ ଯେ ।

ଗ୍ରୁ·ଭୂ

ବର୍ଷାକାଳ ପ୍ରବେଶ ହେବାରୁ ଆକାଶକୁ ମେଘ ଘୋଟି ରହିଲା ଏବଂ ଭୟଙ୍କର କଳାମେଘ ବାରମ୍ବାର ରୁଣ୍ଡ ହୋଇ ଖେଳ ଆରମ୍ଭକଲା । ଅତି ବେଶୀ ବର୍ଷା ହେବାରୁ ଜଣାଗଲାଯେ ଐରାବତ ହସ୍ତୀ ଶୁଣ୍ଢରେ ପାଣି ଢ଼ାଳୁଅଛି । ବିଜୁଳି ମେଘରୂପ ହସ୍ତୀର ପତାକା ପରି ।

ଶ୍ରବଣେ ଘନ ଘନ        ଗର୍ଜନେ ଘନ ଘନ
ଗୃହିଁ ଲୋଚକ ଥନଥନ

କହେ ସୁମନ ମନ                ମୋହି ଜୀବନ ବନ-
ଜାକ୍ଷୀ ହେବନି ଛନ୍ନ ଛନ୍ନ ହେ
ଜଳଧର
କେହି ନେବ ଦୁର୍ଦ୍ଦିନ ଦିନ
ସେ ଯେ ମୋର ନିଧନ ଧନ
ହୋଇ ଅନ ଅନନ                ଭବୁ ଭବନ ବନ
ସେ କି କଷ୍ଟ ଭଜନ ଜନ ।                ର· ହା·

ରସିକ ହାରାବଳୀ କାବ୍ୟର ନାୟକ ବିଦେଶରେ ରହି ଚିନ୍ତା କରୁଅଛି–ହେ ମେଘ ! ତୁମ୍ଭର ଘନ ଘନ ଗର୍ଜ୍ଜନ ଶୁଣି, ମୋର ମନମୋହିନୀ ପ୍ରିୟା ଦେଖି ଲୋତକ ଥନ ଥନ କରୁଥିବ । ହେ ମେଘ ! ସେ ଏପରି ସମୟକୁ କପରି କଟାଇବ ସେ? ମୋର ଦରିଦ୍ରର ସମ୍ପତ୍ତି ଅଟେ । ସେ କେବେ ବର୍ଷା କାଳରେ ଦୁଃଖ ଭୋଗ କରି ନାହିଁ । ତାକୁ ଗୃହଟି ବନ ପରି ଲାଗୁଥିବ । ସେ ଏପରି କଷ୍ଟ ସହି ପାରିବକି ? ଏହି ଛନ୍ଦରେ ମହାକବି କାଳିଦାସଙ୍କର ମେଘଦୂତର ପ୍ରଭାବ ପଡ଼ିଅଛି ।

ବିଷ୍ଣୁ ପଦେ ଲୀନ                ହେବାରେ ଚଞ୍ଚଳା
ଜ୍ୟୋତି ପ୍ରକାଶି କଲଲୀଳା
ବିଷକଣ୍ଠ ସୁଖେ                ବିଳସେକୁଳଶେ
ଗିରିଜା ସଙ୍ଘାତ ହୋଇଲା
ବିଲୋକନେ ଯେ
ବିରସ ଯୋଗୀଏ ନୋହିଲେ
ବିକାଶ ପୁଷ୍ପେ                ସୁଜାତ ସୁମନାଏ
ମଧୁପ ମନକୁ ମୋହିଲେ ।                ବୈ. ବି.

ବିରୋଧାର୍ଥ–ବର୍ଷ୍ଣ ପଦ ଲୋପ ହେବାରୁ ଲକ୍ଷ୍ମୀ ନଜର ଶୋଭା ପ୍ରକାଶ କରି, ଏଣେ ତେଣେ ବୁଲିବାକୁ ଲାଗିଲେ । ପାବଁଣ୍ଡ ବୁଳଣ ନାମକ ମାଛ, ଦ୍ୱାରା ଆଘାତ ପାଇବାରୁ ମହାଦେବ ମନ ସୁଖରେ ବୁଲିବାକୁ ଲାଗିଲେ । ଏହି କଥା ଦର୍ଶନ କରି ଯୋଗୀମାନେ ଦୁଃଖିତ ହେଲେ ନାହିଁ । ସୁମନାମାନେ ରଜୋବନ୍ତ ହୋଇ ମହୁଆ ମାନଙ୍କର ମନକୁ ହରଣ କଲେ ।

ପ୍ରକୃତାର୍ଥ । ବର୍ଷ୍ଣ ପଦ–ଆକାଶ ମେଘଦ୍ୱାରା ଆଚ୍ଛନ୍ନ ହେବାରୁ ବିଜୁଳି ନଜର ତେଜ ବିକାଶ କରି ଖେଳିଲା । ବିଷକଣ୍ଠ–ଗୃହକ ମାନେ ଆନନ୍ଦରେ ବିହାର କଲେ । ଗିରିଜା–ପର୍ବତରେ ଜାତ ହୋଇଥିବା ଶୃଙ୍ଗ ବା ବୃକ୍ଷଲତା ପ୍ରଭୃତି ବର୍ଷାଘାତରେ ବିନଷ୍ଟ ହେଲେ । କମ୍ୱା-ଗିରିଜା–ନଦୀ ସମୂହ ନାନା ପ୍ରକାର ମାଛରେ ପୂର୍ଣ୍ଣ ହୋଇ ଯିବାରୁ ବକ ପକ୍ଷୀମାନେ ଆନନ୍ଦରେ ନଦୀ ମଧ୍ୟରେ ବୁଲିବାକୁ ଲାଗିଲେ । ଏହି ବର୍ଷାକାଳକୁ ଦେଖି ଯୋଗୀଏ-ସ୍ତ୍ରୀସହବାସ କରିବା ବ୍ୟକ୍ତି ଦୁଃଖିତ ହେଲେ ନାହିଁ । କିନ୍ତୁ ବିଯୋଗୀମାନେ ଅର୍ଥାତ୍ ସ୍ତ୍ରୀ ସହ ଯେଉଁମାନେ ଯୋଗ ଦେଇ ପାରିଲେ ନାହିଁ ସେମାନେ ଦୁଃଖ କଲେ । ଜାଇ ଓ ମାଳତୀ ଲତାମାନେ ପୁଷ୍ପବନ୍ତ ହୋଇ ଭ୍ରମରମାନଙ୍କର ମନକୁ ମୋହିଲେ ।

ବିମଳ କକୁଭ  କଦମ୍ବ କକୁଭ
କଦମ୍ବ ମଳନ ରଭସେ
ବିହିତ ଉଡ୍ଡୁପ  ପୁଷ୍କରେ ଉଡ୍ଡୁପ
ପୁଷ୍କରେ ଆଉ ଯେ ନହିରେ ।
ବନେ କଲେ ଯେ
ବରହୀ ଶିଖୀ ଠେକ ନୃତ୍ୟ

ବନେ ହେଲେ ଯେ ବରହ୍ମ ଶିଖା ତହିଁ
ସମସ୍ତ ପରକାରେ ହତ ବୈ. ବ.

କଦମ୍ବ କକୁଭ-ହଂସମୂହ ମଳିନ ହେଲେ ଏବଂ ହଂସ ସମୂହ ନିର୍ମଳ ହଶିଲେ । ପୁଷ୍କରେ-ଆକାଶରେ ଚନ୍ଦ୍ର ଦେଖାଗଲେ ନାହିଁ । ପୁଷ୍କରେ–ଜଳରେ, ଉଡ଼ୁପ–ନୌକା ଦେଖା ଗଲେ । ବରହି ମୟୂରମାନେ ପୁଚ୍ଛ ଟେକି ନୃତ୍ୟ କଲେ ଏବଂ ସେହି ବନରେ ମୟୂର ପୁଚ୍ଛଯାକ ସମସ୍ତ ପ୍ରକାରେ ଭଙ୍ଗି ଝଡିପଡି ନଷ୍ଟ ହେଲେ ।

ପ୍ରକୃତାର୍ଥ । ବର୍ଷାକାଳ ଆସିବାରୁ କଦମ୍ବ, କକୁଭ–କଦମ୍ବ ଓ ଅର୍ଜୁନ ବୃକ୍ଷସବୁ ନିର୍ମଳ ଦେଖାଗଲେ । ଅର୍ଥାତ୍ ନୂତନ ପୁଷ୍ପ ଓ ପତ୍ରରେ ମଣ୍ଡିତ ହୋଇ ସୁନ୍ଦର ଦେଖାଗଲେ । ହଂସମାନେ, ମେଘାଛନ୍ନ ହେବାରୁ ମଳିନ ଦେଖାଗଲେ । ପୁଷ୍କରେ-ଜଳରେ ନୌକାମାନ ଦେଖାଗଲେ । ପୁଷ୍କର–ଆକାଶରେ ଉଡ଼ୁପ–ଚନ୍ଦ୍ର ଆଉ ଦେଖାଗଲେ ନାହିଁ । ମୟୂରମାନେ ପୁଚ୍ଛ ଟେକି ବନରେ ନୃତ୍ୟ କଲେ । ଗ୍ରୀଷ୍ମକାଳରେ ବନରେ ପରିବ୍ୟାପ୍ତ ହୋଇ ଜଳୁ ଥିବା ଅଗ୍ନିଶିଖା ଚତୁର୍ଦ୍ଦିଗରୁ ବାଧା ପାଇ ସେହି ବନରେ ସଂପୂର୍ଣ୍ଣ ରୂପେ ନଷ୍ଟ ହେଲା । ଉପେନ୍ଦ୍ର ଭଞ୍ଜଙ୍କର ଜୀବନ କାଳରେ ଗୁମୁସର ରାଜ୍ୟ ଘନ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା । ଜଙ୍ଗଲର ଚିତ୍ର ଗୁଡ଼ିକ ଜୀବନ୍ତ ହୋଇପାରିଛି । ବନ ଅଗ୍ନି ମଧ୍ୟ ତଦ୍ରୂପ ଅଟେ ।

ଶୁଣ ସାବଧାନେ ସୁଜନ ଜନ
ସରିଲା ଗ୍ରୀଷ୍ମ ବରଷା ରଞ୍ଜନ
ଶୁଭିଲା ଘନାଘନ ଘନ ଘନ
ସ୍ତନ ସବୁ ହେଲେ ଅନ ବଚ୍ଛନ୍ନ

ସ୍ବର୍ଗମାର୍ଗ ପ୍ରାପ୍ତି

ସୁଧା ଭନୁ ଭନୁ ଭନୁ ନନ୍ଦଗି                    ସୁ:ପ

ଗ୍ରୀଷ୍ମ ଋତୁ ଶେଷ ହୋଇ ବର୍ଷାଋତୁ ପ୍ରବେଶ ହେଲା । ମେଘର ଗର୍ଜ୍ଜନ ବାରଂବାର ଶୁଭିଲା, ମେଘ ଗୁଡ଼ିକ ଆକାଶକୁ ଗ୍ରାସକଲା ପରି ଜଣାଗଲା । ଚନ୍ଦ୍ର ଓ ସୂର୍ଯ୍ୟଙ୍କର କିରଣ ପଡ଼ିଲା ନାହିଁ ଏବଂ ଚନ୍ଦ୍ର ଓ ସୂର୍ଯ୍ୟ ଦିଶିଲେ ନାହିଁ ।

ସଂସାର ଜୀବନ ଜୀବନ ତେଜି
ସଉଦାମିନୀ ରଜାରେ ବିରାଜି
ସାରଙ୍ଗ ବନମାଳୀ ଯୋଗେ ଶୋଭା
ସେ ମେଘ ବହିଲା ଶ୍ରୀକୃଷ୍ଣପ୍ରଭା
ସମ ଲେକେ ନାହିଁ
ସୁଖୀ ହୋଇଲେ ହଲଧର ଗୃହିଁ                    ସୁ:ପ

ସଂସାର ଜୀବନ-ଜଳ ମେଘ ବା ଜୀବନ-ଜଳ । ମେଘ ଜଳ ବର୍ଷଣ କରିବା ସମୟରେ ତାସହିତ ବିଜୁଳି ଝଟକିବାରୁ ଶୋଭା ବର୍ଦ୍ଧନ କଲା । ସାରଙ୍ଗ-ମୟୂର ଗୁଡ଼ିକ ବର୍ଷାକାଳରେ ବନରେ ଦେଖା ଯିବା ହେତୁ ଏବନମାଳା ତୁଲ୍ୟ ହେଲା । ମେଘ ଶ୍ରୀକୃଷ୍ଣଙ୍କ ତୁଲ୍ୟ ଦେଖାଗଲା । ମେଘ. ଏପରି ବର୍ଣ୍ଣ ଧାରଣ କଲେ ମଧ୍ୟ ଶ୍ରୀକୃଷ୍ଣଙ୍କ ସହିତ ସମାନ ହେଲା ନାହିଁ. କାରଣ· ଚତୁର୍ଦ୍ଦଶ ଭୁବନରେ କେହି ଶ୍ରୀକୃଷ୍ଣଙ୍କ ସମାନ ନୁହେ । ଏକଥା ଦେଖି ହଲଧର-ବଳରାମ ଆନନ୍ଦ ହେଲେ । ହଳଧର-କୃଷକ ଅତି ଆନନ୍ଦ ହେଲା ।

ସାନ୍ଦ୍ର ହୋଇ ହେଲା ଦୁର୍ଦ୍ଦିନ
ସୁନ୍ଦରଗଣେ ଦ୍ୱିଜ ଚଷ ଦାନ
ସଂଶୟଚିତ୍ତେ ଦ୍ୱିଜ ଚଷ ଗୃହିଁ

ସନ୍ଧ୍ୟା ଜାଣନ୍ତି ଚନ୍ଦ୍ରକାନ୍ତ ଗ୍ରହ୍ଣି
ସମ୍ମୂର୍ଛି ହୋଇଲେ
ସଜଳ ଘନ ମହୀ ଲୁଚ୍ଛଇଲେ । ସୁ.ଫ

ବର୍ଷାକାଳ ମେଘାଚ୍ଛନ୍ନଦିନ । ସେ ପୁଣି ପ୍ରବଳ ଭାବେ ହେଲା । ଏପରି ଅବସ୍ଥା ଦର୍ଶନରେ ପକ୍ଷୀମାନେ ଦୁଃଖରେ ରହିଲେ । ବ୍ରାହ୍ମଣମାନେ ଆହ୍ନିକ କର୍ମ କରିବା ସକାଶେ ସମୟ ଜାଣିନପାରି ସନ୍ଦେହ ଓ ଅନୁମାନରେ ସନ୍ଧ୍ୟା ହେବା ଜାଣିଲେ । ଅର୍ଥାତ୍ ପ୍ରବଳ ମେଘ ଓ ବର୍ଷା ହେଉଥିଲା । ବର୍ଷାଜଳ ବିଶେଷ ହେବାରୁ ଭୂମି ନଦିଶି କେବଳ ସବୁ ଜଳମୟ ଦିଶିଲା ।

ସାରସେ ସାରସେ ସମ୍ବଳକଲେ
ସୁଖ ମାନସେ ମାନସେ ଗମିଲେ
ସୁନାଭିରତ ତଳେ ମୁନି କୁଳ
ସତ ଯେଣୁ ମିତ
ସେନ୍ଦ୍ରାଲଙ୍ଗନ ଜମୂତ ଜମୂତ । ସୁ.ପ

ହଂସମାନେ ପଦ୍ମକୁ ସମ୍ବଳ କରି ସୁଖ ମାନସରେ ମାନସ ସରୋବରକୁ ଗମନ କଲେ । ହିମାଳୟ ଗିରିତଳେ ମୁନିମାନେ ବସି ତପସ୍ୟା କରନ୍ତି । ବର୍ଷାଜଳ ସେଠାରେ ଜମାହେବାରୁ ସେମାନେ ପର୍ବତ ଉପରକୁ ଗମନ କଲେ । ସେଠାରେ ମେଘ ପର୍ବତ ସହିତ ମିତ୍ରତା ଥିବାକଥା ସତବୋଲି ପ୍ରମାଣ ହେଲା । କିପରି ? ପର୍ବତ ଦେହକୁ ମେଘ ଆସି ଲାଗି ରହିଲେ । ବର୍ଷାକାଳରେ ହଂସମାନେ ମାନସରୋବରକୁ ଯିବା ପୌରାଣିକ କିମ୍ବଦନ୍ତୀ ଅଛି । ମେଘମାନେ ବର୍ଷାକାଳରେ ପର୍ବତ ମାନଙ୍କରେ ରହିଥିବା ଦେଖାଯାଏ । ଜମୂତ–ପର୍ବତ ଓ ମେଘ ।

ଦଂଜର୍ଥ୍ୱ ଶୂନ୍ୟେ ପତନ ଭଦୂର
ସଙ୍କା ଦୂର କଲେ ଗର୍ଜ୍ଜି ଦର୍ଦ୍ଦୂର
ମଦାତ ସଙ୍ଗତେ କରକାପାତ
ସରିତ ବୃଦ୍ଧି ହୋଇଲେ ତ୍ୱରିତ
ସରଣୀ ପଙ୍କିଳ
ଶମୂକ ଡ଼ାକଲେ ମୂକ କୋକଳ । ସୁ.ପ

ମେଘ ଗର୍ଜନ ପ୍ରବଳ ଭାବେ ଶୁଣାଗଲା ଏବଂ ତା ସାଙ୍ଗରେ ବଜ୍ର ପତନ ମଧ୍ୟ ହେଲା । ବେଙ୍ଗମାନେ ଗର୍ଜ୍ଜନ କରି ବେହୋସ ହେଲେ ଓ କେତେକ ମଧ୍ୟ ମଲେ । ବର୍ଷାସହ କୁଆପଥର ମଧ୍ୟ ପଡ଼ୁଛି । ନଦୀମାନଙ୍କରେ ଜଳ ପୂର୍ଣ୍ଣ ହୋଇ ବେଗରେ ଗତି କରୁଛି । ଜଳାଶୟ ମାନ ବର୍ଷାଜଳରେ ଅଳ୍ପ ସମୟରେ ପୂର୍ଣ୍ଣ ହେଉଅଛି । ରାସ୍ତାଘାଟ କାଦୁଅ ହେଉଛି । ଶାମୁକ ମାନେ ମକ ମକ ଶବ୍ଦକଲେ । କୋକିଳର ରବ ଶୁଣାଗଲା ନାହିଁ । ଅର୍ଥାତ୍ କୋକିଳ ମୂକ ହୋଇ ରହିଲା ।

ଜ୍ୟୋତିକଲେ ଜ୍ୟୋତିରିଙ୍ଗଣ ଗଣ
ଭ୍ରାନ୍ତିରେ ପଥିକ ପଦାରିଙ୍ଗଣ
ସୁମନସ ଦଣ୍ଡଧର କୋଦଣ୍ଡ
ସମୃଦ୍ଧ ବାଲ୍ମୀକୁଁ ଗଗନେରୁଣ୍ଡ
ସେ ରୁଜ୍ ରୋହିତ
ସମୀର ସମୀରଣ ଅନୁବ୍ରତ । ସୁ.ପ

ଅନ୍ଧାର ରାତିରେ ଜ୍ୟୋତିରିଙ୍ଗଣ-ଜନ୍ତୁ ଜୁଳା ପୋକ ମାନେ ଉଡ଼ିବାରୁ ଅଗ୍ନିକଣାପରି ଦେଖାଗଲା । ରାସ୍ତା କାଦୁଅ ହୋଇ ଥିବାରୁ ବାଟୋଇ ମାନେ ଠିକ୍ ଭାବେ ଗତିକରି ନପାରି କରୁଛ

ହୋଇ ପଡ଼ିବା ଶବ୍ଦ ଶୁଭେ । ବର୍ଷାକାଳରେ କନ୍ଦର୍ପ ବାଧାରେ କେତେକ ଲୋକ କଷ୍ଟ ପାଇଲେ । ଇନ୍ଦ୍ରଧନୁ ମଧ୍ୟ ଦେଖାଗଲା । ପ୍ରବାଦ ଅଛି–ଉଇ ହୁଙ୍କା ଧରି ଏହା ପ୍ରକାଶ ହୋଇଥାଏ । ଉଇ ହୁଙ୍କାରୁ ଝିଁଡ଼ିପୋକମାନେ ବାହାରି ଆକାଶରେ ଭ୍ରମ୍ଭ ହେଲେ । ପବନ କେତେବେଳେ ହେଲେ ଗୋଟିଏ ଦିଗରୁ ସଳଖରେ ନ ବହି ଏଣୁ ତେଣୁ ବହିବାକୁ ଲାଗିଲା ।

ସମୂଳ ବିନାଶ ବନବହ୍ନି
ସ୍ଥାଣୁ ଉପରେ କ୍ରୀଡ଼େ ବକରନ୍ଧ
ସୁମନେ ନର୍ତ୍ତନ କଲେ ବରହୀ
ସଶଙ୍କ ହୋଇଲେ ଦେଖି ବିରହୀ
ସୃଷ୍ଟିରେ କି ଶାନ୍ତି
ସ ପ୍ରହାର କଲା ମାରବର ହିଁ । ସୁ: ପ

ବର୍ଷାକାଳର ପ୍ରବଳ ଜଳ ପାତରେ ଖରାଦିନରୁ ବନରେ ଲାଗିଥିବା ଦାବାନଳ ସମୂଳେ ବିନାଶ ପ୍ରାପ୍ତ ହେଲା । ଲଣ୍ଡାଗଛ ଉପରେ ବସି ବଗମାନେ କ୍ରୀଡ଼ା କଲେ । ମେଘ ଦର୍ଶନରେ ମୟୂର ମାନେ ନୃତ୍ୟ କଲେ । ବର୍ଷାଦିନର ଏହି ଘଟଣା ସବୁ ଦେଖି ବିରହୀ ମାନେ ଶଙ୍କା କଲେ । ମାରଙ୍କର ପ୍ରହାର କଲା, ବା ଦଣ୍ଡ ଦେଲା । ଏହି ସଂସାରରେ ଆମ୍ଭ ମାନଙ୍କର ରକ୍ଷା ନାହିଁ ।

ସୁମନା ସୁମନା ଫୁଟିଲେ ବନେ
ସୁମନା ସୁମନା ହେଲେ ଲୋକନେ
ସୁମନାଙ୍କର ସହିଁ ଅନୁରାଗ
ସଂଫୁଲ୍ଲ କଦମ୍ବ କଦମ୍ବ ବେଗ

ଶୋଭେ ଜାତି କଳି
ସ୍ଫୁଁଟେ କଦଳୀରେ ବଣ କଦଳୀ । ସୁ· ପ

ବନ ମଧ୍ୟରେ ମାଲତୀ ଫୁଲ ଫୁଟିଲେ, ନାରୀମାନେ ସେହି ଫୁଲକୁ ଦେଖି ସୁବାସ ଗ୍ରହଣ କରି ଆନନ୍ଦ ଲାଭ କଲେ । ଦେବତା ମାନଙ୍କର ସେହିଁଥିରେ ଆନନ୍ଦ ସେହି କଦମ୍ବ ଫୁଲ ସମୂହ ବିକାଶ ହେଲେ । ଜାଇ ଫୁଲ ଫୁଟିଲା । କଦଳୀ ଗଛମାନଙ୍କରୁ ଭଣ୍ଡା ବାହାରିଲା । ଚତୁର୍ଦ୍ଦିଗରୁ ଶବ୍ଦ ଶୁଣି ମୃଗମାନେ ବଶ୍ୟ ହେଲେ ।

ସହଜେ ବିଦେଶୀ କାଳ କଣ୍ଟକ
ସ୍ୱନାଦେ ହୋଇଲେ କାଳକଣ୍ଟକ
ସ୍ମର ଯମଦୂତ ପ୍ରାପ୍ତେ କେତେକ
ଘୁ ପ୍ରକାଶ ତହିଁ ହେଲେ କେତେକ
ସୁନ୍ଦର ଟେଟସ
ପ୍ରୋତ ସ୍ୱଚ୍ଛ ତଟ ବିଟପୀ ନାଶ । ସୁ· ପ

ଯୁବକମାନେ ବିଦେଶରେ ଥିବା ବେଳେ, ବର୍ଷାକାଳ ତାଙ୍କ ପକ୍ଷରେ କାଳକଣ୍ଟକ ହେଲା । କାଳ କଣ୍ଟକ-ଡାହୁକମାନେ ରାବିବାରୁ ତାଙ୍କ ପାଖକୁ ଯମଦୂତମାନେ ଆସିବା ପ୍ରାୟ ଜଣାଗଲା । କେତେକ ଲୋକ ସେହି ରାବକୁ କନ୍ଦର୍ପର ଖଡ୍ଗ ଧରି ଭାବିଲେ । ନଦୀତଟରେ ଥିବା ବଡ଼ ବଡ଼ ବୃକ୍ଷମାନେ ନଦୀର ଜଳ ଘାତରେ ଉପୁଡ଼ି ପଡ଼ି ଭାସିଗଲେ ଏବଂ ବିନାଶ ଲଭିଲେ ।

ସମ୍ଭୂତ ଇନ୍ଦ୍ର ଗୋପ ମହାଦେଶେ
ସାର ଯୂଥିକା କୁଟକ ପ୍ରକାଶେ

ସଲିଲ ଧର ଋତୁ କଲା ପୁଣ
ସୁମଲଠ ବୃନ୍ଦ ଭୋଜ ଭିଆଣ
ସମ୍ମୁଖ ପ୍ରସୂନ
ସ୍ୱାଦୁ ଘେନବଲେ କର ରସପାନ ।—ସୁ. ଚ

ସାଧବବୋହୂ-ଇନ୍ଦ୍ରଗୋପ କୀଟମାନେ ମହୀରେ ଜାତ ହେଲେ । ଯୂଈ ଓ କେରୁଅଁ ଫୁଲମାନେ ଗଛରେ ଫୁଟିଲେ । ଏ ବର୍ଷା ଋତୁ ଭ୍ରମରମାନଙ୍କୁ ଭୋଜ ଖୁଆଇ ତାଙ୍କ ଆଗରେ ରଖିଲା । ବର୍ଷାକାଳରେ ଫୁଟିବା ଫୁଲମାନଙ୍କରୁ ଭ୍ରମରମାନେ ମଧୁପାନ କଲେ ।

ଏମନ୍ତ ତହିଁ ଗଲା କେତେ ମାସ
ଆସି ଆଷାଢ଼ ହୋଇଲା ପ୍ରବେଶ
ଘନ ଗର୍ଜନକୁ ଭେକ ଗର୍ଜନ
ମହା ଭୟ କଲେ ବିରହୀ ଜନ
ମାଳତୀ ବିକାଶ
ଜାତକରେ ଅଳି ପାଇ ହରଷ । ସୁ. ଚେ

ଅଷାଢ଼ ମାସ ଉପସ୍ଥିତ ହୋଇ ବର୍ଷାକାଳ ହେଲା । ବର୍ଷାକାଳ ହେତୁ ମେଘ ଗର୍ଜନ କଲା । ଭେକମାନେ ଗର୍ଜନ କଲେ । ବର୍ଷାକାଳ ପ୍ରବେଶ ଦେଖି ବିରହୀମାନେ ମହାଭୟ କଲେ । ମାଳତୀ ପୁଷ୍ପ ବିକାଶ ହେଲା । ଏହା ଦେଖି ଭ୍ରମରମାନେ ଆନନ୍ଦ ହେଲେ ।

ମୟୂର ନାଟକୁ ବିଦ୍ୟୁଚ୍ଛଟକ
କାଳ କଣ୍ଠରବ କାମୀ-କଣ୍ଟକ

କଦମ୍ବ ବାତ ଅନଳ ଅହୁତ
ହୋଇଲେ ଚହିଁ ଏକାକୀ ଯୁବତୀ
ଏ ଋତୁକୁ ଚାହିଁ
ନବ ଋତୁ ମତୀ ରସିକଧ୍ୟାୟୀ । ସୁ. ରେ.

ବର୍ଷାକାଳରେ ମୟୂର ନାଚ କରେ । ବିଜୁଳୀ ଝଟକେ । କାଳକଣ୍ଠ-ଡାହୁକ, ଭେକମାନେ ରବକଲେ । ଏହି ରବ କାମୀ ଜନଙ୍କ ପକ୍ଷରେ କଣ୍ଟକ ହେଲା । ଯୁବତୀ ସ୍ତ୍ରୀ ଏକାକୀ ଥିବାବେଳେ କଦମ୍ବ ଫୁଲରେ ବାଜି ଆସିବା ପବନ ଅନଳରେ ଆହୁତି ଦେଲା ପ୍ରାୟ ଲାଗିଲା । ଏ ଋତୁକୁ ଦେଖି ନବ ଋତୁମତୀ ସ୍ତ୍ରୀକୁ ରସିକ ଧ୍ୟାନ କରୁଅଛି ।

ହେଲା ବରଷା କାଳ ସୁରଞ୍ଜନ
ନଭ ଲେପି ଦେଲା ପ୍ରାୟେ ଅଞ୍ଜନ
ଆସି ଅଷାଢ଼ ଯେ ଘନ ଘୋଡ଼ାଇ
ଗିରି ଗିଳି ଦେଖାଇଲା ବଢ଼ାଇ
ଅନିବାର ଜଳ ଧାର ପ୍ରକାଶ
ଲୋକ ଲୋକନେ ନୋହିଲା ଆକାଶ
ପୂର ତଟିନୀ ତଟକୁ ଗ୍ରାସିଲା
ଫେନମୟ ଜଳ ଶୋଭା ଦିଶିଲା
ରଖିବରହୀ ଶିଖେ ବରହଣ
ନୃତ୍ୟକଲେ ଗିରି ଶିଖେ ରହଣ
ଅନୁକ୍ଷଣେ ଧ୍ୱନି କଲେ ଦର୍ଦ୍ଦୁର
ଶୁଣି କାମେ ଚେତନା ହେଲାଦୂର
ବନ ଅନଳ ନାଶକୁ ଭଜିଲେ
କେକୀ ଡାହୁକ ମାନେ ଗରଜିଲେ । ଘୋ.ବ

* ୩୧ *

ସରସିଜ ନାଳ କରି ସମ୍ବଳ
ମେରୁ ଗମନ କଲେ ହଂସକୁଳ
ଝଟ ଝଟ ହୋଇ ବିଦ୍ୟୁଚମକ
କେସେ କାମ କରବାଳ ଝମକ
ପରକାଶିଣ ଘୋର ଅନ୍ଧକାର
ନିଶି ଦିବସ କଲା ଏକ କାର
କାମ ଉପ୍ତଦାତା ଫୁଲ ବିଶିଖ
ପଡ଼ି ଚଡ଼କ ଚନାଗିର ଶିଖ
ମହୀଧରନ୍ତୁ ନର୍ତ୍ତର ବନ୍ଧିଲେ
କରି ମଦ ଧାର ପ୍ରାପ୍ତ ଶୋହିଲେ
ଅବନୀରୁ ଇନ୍ଦ୍ର ଗୋପଜନନ୍ତ
ହୃଦ ଦୁଲୁ ଦୁଲୁ କଲେ ପ୍ରମନ୍ତ
ମକ ମକ ଧ୍ୱନିକଲେ ଶାମ୍ବୂକ
ବନପ୍ରିୟ ଶୁଣି ଭଜିଲେ ମୂକ
ବନେ ସୁଗନ୍ଧ ମାଳତୀ ଫୁଟିଲେ
ବାସ ଅନୁସରି ଭୃଙ୍ଗେ ମାତିଲେ
ଗୁଡ଼ି ଉଦର କେତକୀ ପ୍ରକାଶ
କଲେ ଦମ୍ପତି ମାନସ ଉଲ୍ଲାସ
ଛଦ ଶୋଭା ଛତ୍ରମାନେ ଲଭିଲେ
ଜାତି ଯୂଥିକା ସୁମନେ ଶୋଭିଲେ
ଜ୍ୟୋତି ପ୍ରକାଶିର ଜ୍ୟୋତିରିଙ୍ଗଣ
ପଥ ପିଚ୍ଛିଲ ପଥିକରିଙ୍ଗଣ
ଲୋଧ୍ର ଶିଳୀନ୍ଧ୍ର ପୁଷ୍ପେ ଶୋଭାରାଶି
ଚନ୍ଦ୍ର ସୂର୍ଯ୍ୟ ଦରଶନ ଗରାସି

କଣ୍ଠଦର୍ଶନ ଏରୂଣ୍ଡୁକୁ ମାର
କଲ ପ୍ରହାର ଖଣ୍ଡଶାରମାର । ଘ.ବ

ସୁରଞ୍ଜନ ବରଷାକାଳ ପ୍ରବେଶ ହେବାରୁ ଆକାଶରେ ଅଞ୍ଜନ ଲେପିଲା ପରି କଳା ମେଘ ଦିଶିଲା । ଗିରିମାନଙ୍କରେ ମେଘ ଘୋଡ଼ାଇ ହୋଇ ରହିବାରୁ ଗିରି ଦେଖି ପ୍ରାୟ ଦିଶିଲା । ଜଳଧାରା ଅବାରିତ ଭାବେ ପ୍ରକାଶ ହେବାରୁ ଲୋକମାନଙ୍କୁ ଆକାଶ ଦିଶିଲା ନାହିଁ । ନଦୀମାନଙ୍କରେ ଜଳ ପୂର୍ଣ୍ଣ ହୋଇ ତଟ ମାନଙ୍କୁ ଗ୍ରାସକଲା । ନଦୀ ବଢ଼ି ହେଲେ ତଟ ମାନଙ୍କରୁ ମାଟି ଧସି ପଡ଼େ । ଜଳରେ ଫେନ ହୋଇ ଶୋଭା ଦିଶିଲା । ମୟୂର ମସ୍ତକ ଉପରେ ପୁଚ୍ଛ ରଖି ଗିରି ଶିଖରରେ ରହି ନୃତ୍ୟକଲା, ବେଙ୍ଗମାନେ ସର୍ବଦା ରବକଲେ ।

ଏସବୁ ଶୁଣି କାମ ବିକାର ଜାତ ହୋଇ ଚେତନା ଦୂର କଲା । ଗ୍ରୀଷ୍ମ କାଳରେ ବନରେ ଲାଗିଥିବା ଅନଳ ବର୍ଷା ହେତୁ ନାଶ ହେଲା । କେକୀ, ଡାହୁକମାନେ ଗରଜନ କଲେ । ପଦ୍ମ ନାଳକୁ ସମ୍ବଳ କରି ହଂସମାନେ ମେରୁ ଅଞ୍ଚଳରେ ଥିବା ମାନ ସରୋବରକୁ ଗମନ କଲେ । ବିଜୁଳି ଝଟ ଝଟ ହୋଇ ଚମକି ଉଠିଲା । ଏହା ଦେଖି କାମୀମାନେ ଭାବିଲେ ଏ ବିଜୁଳି ନୁହେଁ କାମର କର ବାଳ ଅଟେ । ମେଘହେତୁ ଏପରି ଅନ୍ଧାର ହେଲା ଯେ ଦିନ ଓ ରାତି ଜଣାଗଲା ନାହିଁ । ପୁଷ୍ପଶର କାମ ଭୟ ଦାତା ହେଲା । ଗିରି ଶୃଙ୍ଗ ଉପରେ ଚଡ଼କ ପଡ଼ି ଭାଙ୍ଗିଲେ । ପର୍ବତରୁ ନଦୀ ବହିଲା । ନଦୀରେ ଜଳ ପୂର୍ଣ୍ଣ ହୋଇ ଶୋଭା ଦିଶିଲା । ବର୍ଷା ହେତୁ ପୃଥିବୀରେ ଇନ୍ଦ୍ରଗୋପ-ସାଧବ ବୋହୂ ବା ଯାଠ ପୋକ ଜାତ ହୋଇ ଚତୁର୍ଦ୍ଦିଗରେ ବୁଲିବାକୁ ଲାଗିଲେ । ମେଘ ଗର୍ଜନ ହୃଦୟକୁ ଦୁଲ୍ ଦୁଲ୍ କମ୍ପାଇଲା । ଶାମୁକାମାନେ ମକ ମକ ଧ୍ୱନି ଜାତ କଲେ । ବନପ୍ରିୟ-କୋକିଳ ଏସବୁ ରବ ଶୁଣି ମୂକ ଭଜିଲେ । ବନରେ ସୁଗନ୍ଧ

ମାଳତୀ ଫୁଲ ଫୁଟିଲେ । ମାଳତୀ ଫୁଲର ସୁବାସକୁ ଅନୁସରି ଭ୍ରମରମାନେ ଧାଇଁଲେ । କେତକୀ ଫୁଲ ଉଦର ଗୁଡ଼ ପ୍ରକାଶ ହେଲା । ଏହା ଦମ୍ପତି ମାନଙ୍କର ଆନନ୍ଦ ଦାୟକ ହେଲା । ବର୍ଷା ହେତୁ ଛତୁ ଫୁଟି ଛତ୍ରାକାର ଶୋଭା ଦିଶିଲା । ଜାଇ ଯୂଇ ଲତାରେ ଫୁଲ ଫୁଟି ଶୋଭା ଦିଶିଲା । ଜନ୍ତୁ ଜଳିଆ ପୋକମାନେ ରାତ୍ରରେ ଜ୍ୟୋତି ପ୍ରକାଶ କଲେ । ଏହା ପଥିକ ମାନଙ୍କର ଚିତ୍ତ ଦର୍ଶାଇଲା । ଲୋଧ୍ର ଓ ଶିଳନ୍ଧ୍ର ପୁଷ୍ପ ପ୍ରକାଶ ହେଲା । ଚନ୍ଦ୍ର ସୂର୍ଯ୍ୟ ଦରଶନ ତ୍ରାସ କଲା । ଗୁମୁସର ରାଜ୍ୟ ବନ ଜଙ୍ଗଲ ପୂର୍ଣ୍ଣ ହେତୁ ବର୍ଷାଋତୁର ପୁଷ୍ପ ଗିରି ଶୋଭା, ମୟୂରନୃତ୍ୟ, ନଦୀ ଶୋଭା ପ୍ରଭୃତି ଉପେନ୍ଦ୍ର ଭଞ୍ଜ ଦେଖି ଲେଖିଥିବା ମନେ ହୁଏ । ବର୍ଷା କାଳର ବର୍ଣ୍ଣନା ଗୁଡ଼ିକ ନ ଦେଖି ଲେଖିଲେ ଜୀବନ୍ତ ହେବ ନାହିଁ । ଏଠାରେ ବର୍ଣ୍ଣନା ଗୁଡ଼ିକ ପ୍ରାଣବନ୍ତ ହୋଇଅଛି ।

ଜଳଦ ଶାର୍ଦ୍ଦୂଳ ପରି ଆସିଲା
ମୃଗଥିଲାକୁ ଚନ୍ଦ୍ରକୁ ଗ୍ରାସିଲା
ଅଶେଷ ମୃଗ ବିଳାସକୁ ଦେଖି
ଗିରି ଗିଳିଦେଇ ହୋଇଲା ସୁଖୀ
ରାଜ ରାଜ ଗୃହୀଁ
ରବି ମଣ୍ଡଳକୁ ଛାଡ଼ିଲା ନାହିଁ । ର. ଲେ.

ବର୍ଷା କାଳ ହେବାରୁ ମେଘ ଶାର୍ଦ୍ଦୂଳ ପରି ଆସିଲା । ଚନ୍ଦ୍ର ଠାରେ ମୃଗ ଚିହ୍ନ ଥିବାରୁ ତାକୁ ମେଘ ରୂପୀ ଶାର୍ଦ୍ଦୂଳ ଗ୍ରାସ କଲା । ଗିରି ମାନଙ୍କରେ ମୃଗମାନେ ବିଳାସ କରୁଥିବା ଦେଖି ମେଘ ଗିରିମାନଙ୍କୁ ଗିଳି ଦେଇ ସୁଖୀ ହେଲା । ରବି ରଥରେ ସାତଟି ଅଶ୍ୱ ଥିବା ପୌରାଣିକ କିମ୍ବଦନ୍ତୀ ଅଛି । ଅଶ୍ୱ ଆଶାରେ, ମେଘ ଶାର୍ଦ୍ଦୂଳ ରୂପେ ସୂର୍ଯ୍ୟ ମଣ୍ଡଳକୁ ଗ୍ରାସ କଲା । ଶାର୍ଦ୍ଦୂଳର ଭକ୍ଷ୍ୟ ହେଉଛି

ମୃଗ ଓ ଧେଡ଼ଙ୍କ । ଏଣୁ ତାହା ଭକ୍ଷଣ କଲା । ଚନ୍ଦ୍ର ଓ ସୂର୍ଯ୍ୟଙ୍କୁ ମେଘ ଘୋଡ଼ାଇ ଦେଲା ।

ଶରତ୍ ଋତୁ

ବରଷା କାଳ ଅନ୍ତ କରେ ଶବଦ
ବହ୍ନି ଶିବ ଆଡ଼ମ୍ବର
ବର ଧୂତ ଘନା- ଘନ ଖଣ୍ଡୁକରେ
କେଶରୀ ସରି ଆବର
ବର ପର୍ଯ୍ୟେ ନବକନ୍ୟାଙ୍କନେ
ବଢ଼ାଇ ଶୋଭା ପ୍ରବର
ବରଣ କୃତ ରଜକ ପ୍ରଭାବକୁ
ନିର୍ମଳ କାନ୍ତି ଅମ୍ବର
ବରଷଣ ଶରେ କୃଷ୍ଣସାର ହତେ
ଯଥା ଲୁବ୍‌ଧକ ଶବର
ବର ଧନ ମ୍ଳାନ ପୁଷ୍କର ତରଣୀ
କରାଇ ସେ କ ଧୀବର । ବୈ. ବ

ଶିବ ଯେପରି-ପ୍ରଭାବ-ଦେଖାଇ ମୃତ୍ୟୁକୁ ନାଶ କରିଥିଲେ ( ଏଣୁ ତାଙ୍କର ନାମ ମୃତ୍ୟୁଞ୍ଜୟ ) ଶରତ୍ କାଳ ସେପରି-ନିଜର-ଆଡ଼ମ୍ବର ଦେଖାଇ, ବର୍ଷା କାଳକୁ ନାଶ କରାଇଲା । କେଶରୀ-ସିଂହ ଯେପରି ( ଘନାଘନ ) ମତ୍ତ ହସ୍ତୀକୁ, ବିଦାରି-ମାରିବା-ପାଇଁ କମ୍ପି-ଉଠେ, ସେପରି ଶରତ୍ କାଳ ମେଘ ସମୂହକୁ ଛିନ୍ନ ଭିନ୍ନ କରିବା-ପାଇଁ, ଚମକ ଉଠିଲା, ଅର୍ଥାତ୍ ସଙ୍ଗେ ସଙ୍ଗେ ଜଗତରେ ବ୍ୟାପ୍ତ-ହୋଇଗଲା । ବର ଯେପରି-ନୂତନ ବିବାହିତା କନ୍ୟାକୁ ଆଲିଙ୍ଗନ କରି ନିଜର ଶୋଭାକୁ ଅତିଶୟ ଭାବରେ-ବଢ଼ାଇ ଥାଏ,

ଶରତ୍ କାଳ ସେପରି ସିଦ୍ଧ ମାସ ପରେ, ନୂଆକରି ପୃଥିବୀକୁ ଆସୁଥିବା କନ୍ୟା ମାସକୁ ଆଲିଙ୍ଗନ କରି ଅତିଶୟ-ଶୋଭା-ବଢ଼ାଇ-ବାକୁ ଲାଗିଲା, ପୁଣି ଧୋବା ଯେଉଁ ଶକ୍ତି ଦ୍ୱାରା ଅମ୍ବର (ଲୁଗା) ସଫା କରିବାକୁ ଉପଯୁକ୍ତ ହୁଏ, ଶରତ୍ ଧୋବାର ସେହି ଶକ୍ତିକୁ ଧାରଣ କରି ଆକାଶର-ନିର୍ମଳ କର୍ତ୍ତା ହେଲା । ( ଧୋବା ଲୁଗା ନିର୍ମଳ କଲା ପରି ଶରତ୍ଋତୁ ଆକାଶକୁ ନିର୍ମଳ କଲା ) ଲୋଧ୍ର ଶବର ଶର ପ୍ରୟୋଗ କରି କୃଷ୍ଣ ସାର ମୃଗକୁ ମାରିବା ପରି ଶରତ୍ ଜଳ ଦ୍ୱାରା କୃଷ୍ଣ ବର୍ଣ୍ଣ ହୋଇଥିବା ମେଘକୁ-ନାଶ କରି ଆକାଶରେ ସୂର୍ଯ୍ୟଙ୍କର କ୍ରୀଡ଼ା ବିସ୍ତାରିତ କରାଇଲା । ଅତଏବ ସେ କଣ ଧୀବର କି ? କାରଣ ଧୀବରତ ଏହିପରି ଜଳରେ ନୌକାଦ୍ୱାରା କ୍ରୀଡ଼ା ବିସ୍ତାର କରିଥାଏ ।

ଦେଖି ନୀରଦ ଦ୍ୱିରଦ ଶରଦ
ଋତୁ କେଶରୀ ପ୍ରସରି ବିଷଦ
ରୁନ୍ଧି ତମସ ନାଶ ବନ ଦେଶ
ଫୁଟେ ପ୍ରକାଶ କଲେ କାଶ ହାସ
ଘୁରି ଭେକ ଡାକ ଶୁଣିମା କର୍ଣ୍ଣେ
ଯାଇଥିଲେ ମାନସେ ଏହିମାନେ
ଯହୁଁ ସେମାନେ ଗଲେ ଗର୍ଜ୍ଜି ଗର୍ଜ୍ଜି
ମହୀ ପ୍ରବେଶ ହେଲେ ହଂସ ରାଜ

କେହି ଖଦ୍ୟୋତ ସଙ୍ଗେ ଉଦେ ହେବା
ଲାଜେ ତାରକା ଲୁଚିଥିଲେ କିବା
ତାଙ୍କ ସ୍ନେହର ଅବଦାନ ଶଶୀ
ଏବେ ନିର୍ମଳ ଆକାଶେ ପ୍ରକାଶି । ଲ.ବ

ହସ୍ତୀ ସଦୃଶ ମେଘ କାଳ-ଦେଖି, ସିଂହ ତୁଲ୍ୟ ଶରତ୍ କାଳ ଉଦୟ-ହେଲା । ସିଂହ ହସ୍ତୀକୁ ନାଶ କଲା ପରି ଶରତ୍ ଋତୁ ବର୍ଷାକାଳକୁ ନଷ୍ଟ କଲା । ଅନ୍ଧାର ଓ ମେଘ ନଷ୍ଟ ହେବା ଦେଖି, ବନ ଦେଶରେ କାଶପୁଷ୍ପ ହାସ କଲା । ଅର୍ଥାତ୍ କାଶତଣ୍ଡୀ ପୁଷ୍ପ--ଫୁଟିଲା । ବେଙ୍ଗର-ଡାକ ନ ଶୁଣିବା ଛଳରେ ହଂସମାନେ ମାନସରୋବର ଆଡ଼କୁ ଯାଉଥିଲେ । ବେଙ୍ଗମାନେ ଗର୍ଜି ଗର୍ଜି ଲୁଚିଯିବାରୁ ହଂସରାଙ୍କ ମଧ୍ୟରେ-ପ୍ରକାଶ-ହେଲେ । ତାରକାମାନେ ଖଦ-ଦ୍ୟୋତକୁ ଦେଖି ଲାଜରେ ଲୁଚିଥିଲେ । ତାଙ୍କର ପ୍ରିୟ ଚନ୍ଦ ଭଲ ଭାବେ ଦେଖାଯିବା ହେତୁ ତାରକାମାନେ ପ୍ରକାଶ ହେଲେ ।

## ହେମନ୍ତ ବର୍ଣ୍ଣନା

ହେମନ୍ତ ଋତୁ ପ୍ରବେଶ ହୋଇ ହେଲା
ନୟନ ବିଧାତା,
ବେନି ତନୁ ଏକ କଲା ଶୟନରେ
ପୁରୁଷ ବନିତା ।
ଜଳ ଆଦର ଅନଳରେ ନିବେଶି
ଅନିଳ ଅସ୍ନେହ,
ଜଳରେ ପୂରାଇ ପୁଷ୍ପବନ୍ତି କଲା
ସେବନ୍ତି ସନ୍ଦୋହ ।
ପ୍ରଭାତ ଛଳେ ଜଳାଇଲା ମନ୍ଦରେ
ହସନ୍ତ ମାନଙ୍କୁ,
ନିଶି ନିଦ୍ରା ବେଳେ ନତ କରାଇଲା
ଉନ୍ନତ ଜନଙ୍କୁ ।

ଚନ୍ଦ୍ର ଚନ୍ଦନକୁ        ଅଧର ଲୁଚାଇ
ରଖିଲା ବସନେ,
ସମସ୍ତ ତନୁକୁ        ଆଚ୍ଛାଦିତ କଲା
ସୁବର୍ଣ୍ଣ ବିଧାନେ ।
ଦିନ କ୍ଷୀଣ କଲା        ରଜନୀ ବୃଦ୍ଧି କି
କରାଇ ହରଷେ ,
ସକଳ ଅଙ୍ଗେ        ବେପଥୁ ଜାତ କଲା
ପବନ ସ୍ପରଶେ ।
ରବି କିରଣରେ        ଆଦର କରାଇ
ଚନ୍ଦ୍ରମା ପ୍ରକାରେ,
ଜାନୁ ଆଲିଙ୍ଗନ        କରାଇଲା ଏକ
ଦମ୍ପତି ଜନରେ ।
ସକଳ ଗାତ୍ର        ମସୃଣ ହରି ଦେଲା
କରଟ ନିକରେ,
ଶୁକ ଶିଶୁଙ୍କ        ପାଳନକୁ ଉଦୟ
କରାଇ ଲୋକରେ ।
କର ଖେଳାଇଣ        କୃଷକ କୂଳକୁ
କରାଇ ଅରୁଣୀ,
କପୋତ ରୁତେ        କୁହାଇ ଏ କାଳକୁ
ଗଣ୍ଠି ତରୁଣୀ ।        ଲ. ବ.

ହେମନ୍ତ-ଋତୁ ପ୍ରବେଶ-ହେବାରୁ ପୁରୁଷ ଓ ସ୍ତ୍ରୀ ସାଙ୍କ ଯୁକ୍ତ ହୋଇ ଶୋଇଲେ । ପୂର୍ବ ଋତୁରେ ଜଳକୁ ଆଦର କରୁଥିଲେ ଏବଂ ପବନ-ଆବଶ୍ୟକ ମନେ କରୁଥିଲେ । ହେମନ୍ତରେ

ପ୍ରବଳ ଶୀତ-ହେବାରୁ ପ୍ରାଣୀମାନେ ଅନଳକୁ ଇଚ୍ଛାକଲେ, ସେବନ୍ତୀ ଫୁଲ ଫୁଟିଲା । ଗୃହ ମଧ୍ୟରେ-ଲୋକେ ପ୍ରଦୀପ ସ୍ଥଳରେ ନିଆଁ-ଉହ୍ମେଇ-ମାନଙ୍କରେ ନିଆଁ ଲଗାଇ ଶୀତ ନିବାରଣ କଲେ । ବୟସ୍କ ଲୋକମାନେ ରାତ୍ର ନିଦ୍ରା ବେଳେ ଯାକ ଯୁକ୍ତ ହୋଇ ଶୋଇଲେ । କର୍ପୂର, ଚନ୍ଦ୍ର-କିରଣ, ଚନ୍ଦନକୁ-ଆଦର କମି ଗଲା । କାରଣ ଶୀତ କାଳ ହେତୁ ଥଣ୍ଡା ଜିନଷ ବ୍ୟବହାର କରିବାପାଇଁ କଷ୍ଟ ବୋଧ ହେଲା । ଏବଂ ପୋଡ଼ାଇ ହେବା ଲୁଗା ପ୍ରତି ବିଶେଷ ଆଦର ହେଲା । ଯୁବତୀ ସ୍ତ୍ରୀ ମାନେ ଦେହରେ ଲୁଗା ପୂର୍ଣ୍ଣ ମାତ୍ରାରେ ରଖିବାପରି ଶୀତ ହେତୁ ସମସ୍ତେ ସର୍ବଦା-ଦେହରେ ଲୁଗା ରଖିଲେ । ରାତ୍ରକୁ ବୃଦ୍ଧି କରି ଦିନକୁ କ୍ଷୀଣ କରାଗଲା । ପବନ ବହିବା କ୍ଷଣି ଶୀତ ହେତୁ ଶରୀର ଥରି ଉଠିଲା । ଅନ୍ୟ ସମୟରେ ଚନ୍ଦ୍ର-କିରଣକୁ ଆଦର କଲା ପରି ହେମନ୍ତ ଋତୁରେ ସୂର୍ଯ୍ୟଙ୍କର କିରଣ ଲୋକେ ଆଦର କଲେ । କାକର ଦେହ ଅତି ଟିକ୍‌କଣ ଦିଶିଲା ! ଏହି ଋତୁରେ ଶୁଆ ଚୁଆ ବେଶି-ମିଳିବା-ହେତୁ ଲୋକେ ଆଦର-ରେ ରଖନ୍ତି । ହେମନ୍ତ ଋତୁରେ କୃଷକ-ମାନଙ୍କ ଠାରୁ କର ଆଦାୟ କରାଯାଏ ଏବଂ କୃଷକମାନେ ଋଣ ଶୂନ୍ୟ ହୁଅନ୍ତି । ହେମନ୍ତ ଋତୁରେ କପୋତ ବୃତ୍ତିରୁ ଜଣାଯାଏ ଯେ ଏହି ଋତୁରେ କେବଳ ତରୁଣୀ ହିଁ ଗତ ଅଟେ ।

## ଶିଶିର ବର୍ଣ୍ଣନା

ଶିଶିର କାଳ          କାଳ ପ୍ରାପ୍ତ ପ୍ରବେଶ
ନାଶ କଲା ପଦ୍ମଙ୍କ
ଦୀନବନ୍ଧୁ ପରି          ପତ୍ର ଥାଉଁ ବାଜେ
ନଗର ପାଶେ ତହିଁକ

ଶିବା ଧ୍ୱନ ଢେଙ୍କୁରକ
ବିଯୋଗୀ ଶୁଣି ଉତ୍ସୁକ
ତୁଷାର ଜଳଦରେ ପ୍ରଳୟ ରଚଲ
ବଦେଶୀ ନ ପାଇ ସ୍ଥଳ
ମକର ମୁଖରୁ ଆଉକ ବଞ୍ଚିବା
ଭାବ ସେ ହେଲେ ବକଳ
ରଜନୀ ପାଶରେ ଜନ
ବନ୍ଧନ ପରି ଶୟନ ଲ: ବ

ଶିଶିର-କାଳ, କାଳପ୍ରାପ୍ତ-ପ୍ରବେଶହୋଇ ପଦ୍ମକୁ-ନାଶ କଲା। ଧନବନ୍ଧୁ-ସୂର୍ଯ୍ୟପର-ପନ୍ତ- ଥିଲେ-ମଧ୍ୟ ଶୀତ ହେତୁ ପଦ୍ମ ନଷ୍ଟ ହେଲା । ରାଜ ନଗର ମାନଙ୍କରେ ପହରା-ଦିଆ ଯାଏ ଏବଂ ପ୍ରତି ପ୍ରହରକେ ଥରେ ଢେଙ୍କୁରା ବାଜଥାଏ । ଚୋର-ଉପଦ୍ରବାଦିରୁ ନିବାରଣ ଉଦ୍ଦେଶ୍ୟରେ ଏହା-ହୋଇଥାଏ । ଶୀତକାଳ ହେତୁ ପ୍ରତି-ପ୍ରହରକେ ଥରେ ବିଲୁଆ-ରାବଦିଏ। ଏହାଶୁଣି ବିଯୋଗୀ-ମାନେ ଉତ୍କଣ୍ଠିତ ହେଲେ । ଜଳଦ-ପ୍ରଳୟ ହେଲାପରି-ତୁଷାର-ବୃଷ୍ଟି-ହେଲା। ଏଣୁ ବଦେଶୀମାନେ-କୌଣସି ସ୍ଥାନରେ ଏକ ସମୟରେ ସ୍ଥଳ ପାଇଲେ ନାହିଁ। ମକର ମୁଖରୁ ଆଉ ବଞ୍ଚିପାରିବାକ ବୋଲି ବିକଳହେଲେ ।

ଏକ ସମୟରେ ଷଡ଼ରତୁ ଉପଭୋଗର ବର୍ଣ୍ଣନା ।

ପ୍ରବେଶ ସୁରଭି ଘନରସମ୍ପୃ
ଜଗତର ସୁରଞ୍ଜନ
ସୁଖଦାତା ଘନ— ସାର ପ୍ରକାଶରେ
ହରତାପ ପ୍ରଭଞ୍ଜନ

କମଳ କୋଷ— 'ଦାନକର ହୋଇଲା
ବନକୁ ଦୁର୍ଦ୍ଧର କରି
ସୁବାସ ସୁମନାରେ ସେ୍ନହ ଅଧିକ
ସକଳ ଜନ ଆଦରି
କଳ କଣ୍ଠ ରବ ବନାନ୍ତେ ଶୁଭଇ
ଅନଙ୍ଗ ପ୍ରବଳ ସହି
ହେଲା ଶୋଭବନ ବିହାର ସହିତେ
ଆନନ୍ଦନ ନ ରସଇ
ପୁଷ୍କରେ ସାରଙ୍ଗ ଲୀଳା ପ୍ରକାଶିଲେ
ନାସ୍ତିକା ବଚ୍ଛେଦ ଛିନ୍ନ
ଆଶାରେ ଦୃଷ୍ଟି ପକାଇ ସେ ଭଙ୍ଗିରେ
ଲେଖିବ ସେ କଣ୍ଠଧନ
ନଗରେ ବରହୀ ପାତ୍ର ମାନ ହେଲେ
ସଂଯୋଗ ଲୀଳାପ୍ରକାଶ
ଜନ ନୟନକୁ କଦାଚିତ ଆଜ
ଅମୃତ ନୋହିଲା ଦୃଶ୍ୟ
ଏମନ୍ତ କାଳ ମାନଙ୍କେ ନୃପସୁତ
ନୃପ ନନ୍ଦନୀର ସଙ୍ଗେ
ବୃନ୍ଦା ମଶାଣ ଜଗତ୍ର ଅଙ୍କରେ
ବିହାର କରଇ ରଙ୍ଗେ । ଲ.ବ

ଆହ୍ଵ ରସର ଆନନ୍ଦ ଦାୟକ ସମୟ ଆସିଲା । କାରଣ ଗଛ ମାନେ ନୂଆଁ ପତ୍ର ଓ ଫୁଲରେ ଶୋଭିତ ହେଲେ । କର୍ପୂର ଦେହକୁ ଭଲଲାଗିଲା । ବନମାନେ ସୁନ୍ଦର ଦେଖାଗଲେ । ଜଳରେ ପଦ୍ମ ଫୁଟିଲେ । ପବନ ମଧ୍ୟ ବହିଲା ! ଗ୍ରୀଷ୍ମସମୟ ପରି ଜଣାଗଲା ।

ବଉଳ ଗଛ ପତ୍ର ଓ ପୁଷ୍ପରେ ଶୋଭିତ ହେଲା । ପର୍ବତରେ ନିଆଁ ଲାଗିଲା । କର୍ପୂର ମଧ୍ୟ ଥଣ୍ଡା ଲାଗିଲା । ପବନ ଆରାମ ଦାୟକ ହେଲା । ବର୍ଷା ସମାପ୍ତ ହେଲା ପରି ଜଣାଗଲା । ମେଘ ବର୍ଷିଲା । ଗଛ ମାନେ ସତେଜ ହେଲେ । ବେଙ୍ଗଙ୍କର କଷ୍ଟ ଗଲା । ଶୀତ କାଳ ପରି ଜଣାଗଲା । ବେଶି ଶୀତ ହେଲା । ଘୋଡ଼ାଇ ହୋଇ ଶୋଇବାକୁ ସୁଖ ଲାଗିଲା । କର୍ପୂର ପିତା ଲାଗିଲା ଓ ଅସୁଖ ହେଲା ! ସୂର୍ଯ୍ୟଙ୍କର ତେଜ ମଧ୍ୟ କମିଗଲା । ବସନ୍ତ କାଳରେ ପଦ୍ମ ଆନନ୍ଦ ଦାୟକ ହେଲା ବନରେ ନିଆଁ ଲାଗିବାରୁ ଦିନ ଦୁର୍ବହ ହେଲା । ସମସ୍ତେ ସୁବାସ କୁସୁମକୁ ସ୍ନେହରେ ଆଦର କଲେ ।

ଗ୍ରୀଷ୍ମ କାଳ ହେତୁ ସମସ୍ତେ ଜଳକୁ ଆଦରକଲେ । ପ୍ରଖର ରୌଦ୍ର ତାପ ହେତୁ ଦିନବେଳେ ବଡ଼ କଷ୍ଟ ଜାତ ହେଲା । ସମସ୍ତେ ଫୁଲ ମାଳ ପକାଇ ବୁଲିଲେ ।

ବର୍ଷାହେତୁ ସାରସ ପକ୍ଷୀ ଆନନ୍ଦ ହେଲା । ବିଚ୍ଛେଦୀ ମାନେ ବର୍ଷାହେତୁ ଦୁଃଖ ଅନୁଭବ କଲେ । ମାଳତୀ ଫୁଲକୁ ସମସ୍ତେ ଆଦର କଲେ ।

ଶୀତ କାଳ ହେତୁ ଲୋକେ ନିଆଁକୁ ଭଲ ପାଇଲେ ସୁନ୍ଦରୀ ସ୍ତ୍ରୀମାନଙ୍କ ସହିତ ବିହାର କରିବାକୁ ଇଚ୍ଛାକଲେ ।

ବସନ୍ତ କାଳ ହେତୁ କୋକିଳ ରବକଲା । ତାହା ଚତୁର୍ଦ୍ଦିଗରେ ଶୁଣି ଲୋକେ କାମରେ ଆତୁର ହୋଇ ଉପବନରେ ବିହାର କଲେ ।

ଖରାଦିନରେ ଚାତକର ଶବ୍ଦ ଶୁଣାଗଲା । ଖରା ହେତୁ ଲୋକେ ଜଳକେଳିରେ ସନ୍ତୋଷ ଲାଭକଲେ ।

ବର୍ଷାକାଳରେ ଗାୟକ ମାନେ ଗାନ କରି ବାରୁ ସମସ୍ତେ ପ୍ରମୋଦ ଲାଭ କଲେ । ପାଣିସବୁ ନଦୀ ମାନଙ୍କରେ ପ୍ରବଳ ବେଗରେ ଗତି କରିବାକୁ ଲାଗିଲା ।

ଶୀତ କାଳରେ ହଂସ ମାନେ ଜଳ କ୍ରୀଡ଼ାରେ ଆନନ୍ଦ ଲାଭ କଲେ । ଏହା ଦେଖି ଲୋକ ମାନେ ଆନନ୍ଦ ହୋଇ ଘରେ ରହି କ୍ରୀଡ଼ାରେ ମାତିଲେ ।

ବସନ୍ତରେ ପଦ୍ମ ଫୁଲ ଫୁଟିବାରୁ ଶୋଭା ଦିଶିଲା । କୋକିଳ ଗାନ ଶୁଣି ଆନନ୍ଦ ଜାତ ହେଲା । ସ୍ୱାମୀ ପାଖରେ ନଥିବା ହେତୁ ସ୍ତ୍ରୀମାନେ ସ୍ୱାମୀ ଆସିବା ଦିନକୁ ଗଣି କାନ୍ଥରେ ଗାର ପକାଇଲେ ।

ଗ୍ରୀଷ୍ମ କାଳରେ ଲୋକସବୁ କର୍ପୂରପକାଇ ପାଣିରେ, ଗ୍ରୀଷ୍ମ ତାପ ହରଣ କଲେ । ବିଚ୍ଛେଦୀ ସ୍ତ୍ରୀମାନେ କାମଭୟରେ ନିଶିଦିନ ଗଣନା କଲେ ।

ବର୍ଷାହେତୁ ଆକାଶରେ ଚାତକ ପକ୍ଷୀ ଉଡି ଆନନ୍ଦହେଲେ । ମେଘମାନେ ଆକାଶରେ ଉଠି ଖେଳିଲା ପରି ବର୍ଷାକଲେ । ବିଚ୍ଛେଦୀ ସ୍ତ୍ରୀମାନେ ସ୍ୱାମୀ ନଥିବାରୁ ବସି ଦୁଃଖିତ ହୋଇ ଦିନ ଗଣିଲେ ।

ଶୀତକାଳରେ ପାଣିରେ ହଂସମାନେ ଆନନ୍ଦରେ ଖେଳିଲେ । ଏହା ଦେଖି ବିଚ୍ଛେଦୀ ସ୍ତ୍ରୀମାନ ଏକାକୀ ଶୀତ କଷ୍ଟ ଓ ସ୍ୱାମୀ କଷ୍ଟରେ ବଡ଼ ଦୁଃଖରେ ଦିନ ଗଣିଲେ ।

ବସନ୍ତ କାଳରେ ପର୍ବତ ମାନଙ୍କରେ ଥିବା ବୃକ୍ଷ ସବୁ ନବୀନ ପୁଷ୍ପ ପତ୍ରରେ ଭୂଷିତ ହେବାରୁ ସୁନ୍ଦର ଦିଶିଲେ । ସ୍ତ୍ରୀପୁରୁଷ ଏକତ୍ରରେ ଆନନ୍ଦରେ କ୍ରୀଡ଼ାକଲେ । ମେଘ ଦେଖା ନଯିବାରୁ ଆକାଶ ନିର୍ମଳ ଦେଖାଗଲା ।

ଖରା କାଳରେ ପର୍ବତ ମାନଙ୍କର ଗଛଲୁଗଛ ଘଷି ହେବାରୁ ଅଗ୍ନି ଜାତହେଲା । ସେ ନିଆଁ ଚତୁର୍ଦ୍ଦିଗରେ ବ୍ୟାପୀ ଗଲା । ସୂର୍ଯ୍ୟଙ୍କ ତେଜ ଅତି ପ୍ରଖର ହେତୁ ଆକାଶରେ ମେଘ ଦେଖାଗଲା ନାହିଁ ।

ବର୍ଷାକାଳରେ ବର୍ଷା ହେତୁ ପର୍ବତରେ ବା ଗ୍ରାମ ମାନଙ୍କରେ କଳା ମେଘକୁ ଦେଖି ମୟୂର ମାନେ ପୁଚ୍ଛ ଟେକି ନାଚିବାରୁ ଶୋଭା ଦିଶିଲା । ପର୍ବତ ସବୁ ମେଘରେ ଘୋଡ଼ାଇ ହୋଇଗଲା ।

ଶୀତକାଳରେ ଲୋକମାନେ ଘରେ ନିଆଁ ଜାଳି ଶୀତ କଷ୍ଟ ନିବାରଣ କଲେ । ଆକାଶ ନିର୍ମଳ ଦେଖାଗଲା । ସଂଯୋଗ ଲୀଳାମଧ୍ୟ ଅଧିକ ହେଲା । ରାଜ କୁମାର ଚନ୍ଦ୍ରଭାନୁ ଓ ଲାବଣ୍ୟ-ବତୀ ବସନ୍ତ, ଗ୍ରୀଷ୍ମ, ବର୍ଷା ଶୀତ କାଳକୁ ଏକ ସମୟରେ ଭୋଗକଲେ । ପୂର୍ଣ୍ଣିମା-ଚନ୍ଦ୍ରକିରଣ ମଶାରି-ମଶାରି ଶବ୍ଦ, ଜଗତୀ-ଉଚ୍ଚ କୋଠାଘର ଅଙ୍କ-କୋଳ, ରାଜକୁମାର ଚନ୍ଦ୍ରଭାନୁ ଚନ୍ଦ୍ର ରଜନୀରେ ଉଚ୍ଚ କୋଠା ଘରେ ମଶାରି ବେଷ୍ଟିତ ହୋଇ ଲାବଣ୍ୟ ବତୀକୁ କୋଳରେ ଧରି ବସିଥିବା ଦୃଶ୍ୟ ବିଚାର କରି କବି, ୪ଋତୁର କଳ୍ପନା ଏକ ସମୟରେ କରି ଅଛନ୍ତି ।

ଏକ ସମୟରେ ଦିନ ରାତ୍ର ଓ ଷଡ଼ଋତୁ ବର୍ଣ୍ଣନା

ରହିତ ଦୂଷଣ ବିବିଧ ଭୂଷଣ

ଯୋଦ୍ଧା ସ୍ଥାନେ ମଣ୍ଡିଲେ,

ତନୁ ଆସ୍ୱାଦ ନୀଳ ଶୀନବସନେ
ସ୍ନେହେ ଆଲିଙ୍ଗନକଲେ । ୨୯ ।
ସୁନ୍ଦର ବିଧାନ ସୁନ୍ଦରୀ ରଚନ
ବିଶିଲା ବିବସ ଲକ୍ଷ୍ୟ,
ସୁର ଚକ୍ରବର୍ତ୍ତୀ କାନ୍ତରୁ ପ୍ରମୋଦ
ବିସ୍ତାର ଅଛି ପ୍ରତ୍ୟକ୍ଷ୍ୟ । ୩୦ ।
ରଜନୀ ପର୍ଯ୍ୟେ ନକ୍ଷତ୍ର ନିର୍ମଳ
କରଜ ଗତାନୁ ରାଗୀ
ବରଷା ପର୍ଯ୍ୟେ ନବ ଜଳ ଧର
ଅଂଶୁକ ଧାରୀ ସୋହାଗୀ । ୩୧ ।
ଶରଦ ପର୍ଯ୍ୟେ ପରତେ ଏ ଯେନ
ବିମଳ ବିଶଦାକାର,
ଯେଣୁ ପାକଶାଳୀ ଭାରତୀ ମନ୍ଦିରେ
ମଣ୍ଡିତ ହିମ ପ୍ରକାର । ୩୨ ।
ଶିଶିର ଜାଣି ହିମପୁର କମଳ
ପରାଭବ ଦତ୍ତଦକ୍ଷ,
ବସନ୍ତ ପକ୍ଷ ବିପିନ ଆଲିଙ୍ଗନେ
ପ୍ରସନ୍ନ ମନ ପ୍ରତ୍ୟକ୍ଷ । ୩୩ ।
ନିଦାଘ ପର୍ଯ୍ୟେ ଭୁବନେ ସକଳ
ଆଦର ହୋଇଛି ଯେଣୁ,
କାନ୍ତକାନ୍ତା ଅଙ୍ଗେ ବନ୍ଧିଲ ବାଣସେ
ଯାହାକୁ ନାଶିଲେ ସ୍ଥାଣୁ । ୩୪ । ଚ·ରେ

ଚନ୍ଦ୍ରରେଖା କାବ୍ୟର ନାୟକ ଚନ୍ଦ୍ରଧ୍ୱଜ ଏବଂ ନାୟିକା ଚନ୍ଦ୍ରରେଖା ବିବାହ ପରେ ଉପବନ ବିହାର ବେଳେ ବର୍ଣ୍ଣନା କରି ଯାଇ ଅଛି । ଦୂଷଣ ରହିତ ବିବିଧ ଭୂଷଣ ଯେ ଯାହା ସ୍ଥାନରେ ମଣ୍ଡିନ କଲେ । ତନୁ, ନୀଳରଙ୍ଗର ସୂକ୍ଷ୍ମ ଶାଢ଼ୀରେ ଆଚ୍ଛାଦନ କରିଥିବା ଦୃଶ୍ୟକୁ କବି, ଦିବସ, ରାତ୍ରି, ବର୍ଷା, ଶରତ୍ ହେମନ୍ତ, ଶିଶିର, ବସନ୍ତ, ଓ ଖରା କାଳର ବର୍ଣ୍ଣନା କରି ଅଛନ୍ତି । ସବ ଦୃନ୍ଦରେ ପରିପୂର୍ଣ୍ଣ ସୁନ୍ଦରୀ ଦିବସପରି ଦେଖାଗଲା । ସମସ୍ତ ଜିନିଷ ଗୁଡ଼ିକ ଅତି ତେଜସ୍ୱାନ୍ ଦେଖାଯିବା ହେତୁ ଦିବସ ପରି ପ୍ରତୀତ ହେଲା । ରାତ୍ରି ପରି ଦେଖାଗଲା । ରାତ୍ରିରେ ଆକାଶରେ ନକ୍ଷତ୍ର ଗୁଡ଼ିକ ନିର୍ମଳ ଦେଖାଗଲେ ପରି ଏଠି ରାଣୀ ଚନ୍ଦ୍ରରେଖାର ନଖ ଗୁଡ଼ିକ ନକ୍ଷତ୍ର ପରି ନିର୍ମଳ ଦେଖାଯାଉ ଅଛି । ନୀଳ ଶାଢ଼ୀ ଆକାଶ ହେଲା । ତାମଧ୍ୟରେ ନଖ ଗୁଡିକ ନକ୍ଷତ୍ର ହେଲା । ନୂତନ ମେଘପରି ବସ୍ତ୍ରଧରିଥିବା ହେତୁ ବର୍ଷାଋତୁ ସୂଚିତ ହେଲା । ଶରତ୍ ଋତୁରେ ପଦାର୍ଥ ଓ ଆକାଶ ନିର୍ମଳ ରହେ । ସେପରି ରାଣୀଙ୍କ ଦେହରେ ନୀଳ ଶାଢ଼ୀ ଅଛି ଏବଂ ଅଙ୍ଗ ପ୍ରତ୍ୟଙ୍ଗର ଜିନିଷ ନିର୍ମଳ ଦିଶୁଅଛି । ହେମନ୍ତ ଋତୁରେ ପାକଶାଳୀ ଯେପରି ଦିଶେ ସେପରି ରାଣୀଙ୍କର କାନ୍ତି ଦିଶୁଅଛି । ଏଣୁ ହେମନ୍ତ ଋତୁ ସୂଚିତ ହେଲା । ଶୀତ ଋତୁରେ ଶିଶିର ପାତରୁ କମଳ ପରାଭବ ପାଏ ଓ ନଷ୍ଟ ହୁଏ । ସେପରି ରାଣୀର ହାତ ଓ ପାଦ ଏବଂ ମୁଖ ପଦ୍ମପରି ହୋଇଥିବାରୁ କମଳ ପରାଭବ ପାଇଲା । ଏଣୁ ଶିଶିର ଋତୁ ସୂଚିତ ହେଲା । ବସନ୍ତ ଋତୁରେ ବନ ଉପବନ ବିହାର ବେଳେ ମନ ଅତି ପ୍ରସନ୍ନ ରହେ । ରାଜା ଓ ରାଣୀ ଉପବନରେ ଆନନ୍ଦ ମନରେ ଭ୍ରମଣ କରୁଥିବା ହେତୁ ବସନ୍ତ ଋତୁ ସୂଚିତ ହେଲା । ନିଦାଘ କାଳରେ ଜଳକୁ ସମସ୍ତେ ଆଦର କରନ୍ତି । ଉପବନରେ ରାଜା ଓ ରାଣୀ ଜଳ ଆଦର କଲେ ।

ଏହି ସବୁ ଅବସ୍ଥାରେ ରଜା ଓ ରାଣୀ ଅଧୀର ହେବାରୁ କାମ ବିକାର ଜାତ ହେଲା, ଏବଂ କାମ ପଞ୍ଚବାଣ ପ୍ରୟୋଗ କଲା ।

ପ୍ରଭାତ

ହେଲାନଶି ନାଶ                                  ଗଲା ବଣି ବଣ
କ ପ୍ରାଚୀ ନାଗରୀବର
ନୀଳ ଶାଢ଼ୀ ଗୁଡ଼                                  ଅରୁଣ ସବରେ
ପିନ୍ଧନ୍ତି ଲୋହିତାମ୍ବର, କଳ୍ପଳ
କଞ୍ଜୁଉଡ଼ ଯିବାଇଛେ ଅଳ
ସେହି ପଦ୍ମ ସୁରସଶାଳୀ
କାନ୍ତ ଉପରକୁ ଡୋଳା ଢାଳ
ଭୁଜଙ୍ଗ ଅଙ୍ଗ                                  ଦଗଦ୍ଧି ପୁରଦର
ନାଦଦର ପ୍ରଦ ହୋଇ
ଭୁଜଙ୍ଗ ବନ୍ଧକୀ                                  ବନ୍ଧ ସଯୋଗକୁ
ଚନ୍ଦ୍ରଯୁଗେ ନଦେଇ ଥୋଇ, ସେଧନ୍ୟ
ତାଙ୍କ ଠାରୁ ଯେଉଁମାନେ ଭିନ୍ନ
ବେଜ ପ୍ରୀତି କେବେ ନୋହେ ଭିନ୍ନ
ଏହିମତି ପ୍ରତି ରାତ୍ରିଦିନ
କୁକ୍‌କୁଟ କୁଟ                                  ରଚରେ ପଳାଇତ
ଚଉର ଅଭ୍ରସ ରଙ୍କା
ଲଭିଲା ଧନ                                  ଚନ୍ଦ୍ର ବର୍ଣ୍ଣ ଲୁଚଇ
ନଗାଦରେ କରିଦକା, ସେ ଭଲେ
ତାରା ବାସକ ସଜ୍ଜା ଯୁଗଳେ

ପ୍ରଭବନ୍ତି ମ୍ଳାନି ଏକାବେଳେ
ଭଲ ଯେମା ଯେନ ହୋଇ ଥିଲେ ।
କୋ. ଗ୍ରୁ. ସୁ

ରାତ୍ରିଶେଷହୋଇ ଯିବାରୁ ଦିଗମାନେ ଦିଶିଲେ । ପ୍ରାଚୀ-ନାଗରୀବର ରାତ୍ରି ରୂପକ ନୀଳ ବର୍ଣ୍ଣ ଶାଢ଼ୀ ଛାଡ଼ି ଅରୁଣ ସରାଗରେ ରକ୍ତ ବର୍ଣ୍ଣ ଶାଢ଼ୀ ପିନ୍ଧିଲା ପରି-ଦେଖାଗଲା । ପ୍ରଭାତ-ସମୟ, କି ସୁନ୍ଦର ଦେଖାଗଲା । ସୂର୍ଯ୍ୟାସ୍ତମ-ରେ, ପଦ୍ମ-ନାୟିକା ଅସତୀ ସ୍ତ୍ରୀ ପରି କୋଡ଼ରେ ଭ୍ରମରକୁ ଧରି ଶୋଇଥିଲା । ରାତ୍ରି ଶେଷରେ ସେହି-ପଦ୍ମ-ମଧ୍ୟରୁ ଭ୍ରମର ଉଡ଼ିଯିବା ପାଇଁ ଇଚ୍ଛାକଲା । ପ୍ରଭାତ-ହେତୁ ପଦ୍ମ ସୁରଣଶାଳୀ ହୋଇ କାନ୍ତ-ଉପରକୁ ଢୋଳା ଢ଼ାଳିଲା-ପରି-ଦେଖାଗଲା । ସୂର୍ଯ୍ୟୋଦୟ ପୂର୍ବରୁ ପଦ୍ମ ସମୂହ ସୂର୍ଯ୍ୟ ଉଦୟ ଦିଗକୁ ଢଳି ରହିଥାଏ । ପଦ୍ମ ମଧ୍ୟରେଥିବା ଭ୍ରମର ରୂପକ ଢୋଳା ଢ଼ାଳି ରୁହିଁ-ରହିଲାପରି-ଦେଖାଗଲା । ପ୍ରଭାତ କାଳ ହେତୁ ଶିବାଳୟ-ମାନଙ୍କରେ ଶଙ୍ଖ-ଧ୍ୱନି ବାଜଉଠିଲା । (ଗ୍ରାମାଞ୍ଚଳ ମାନଙ୍କରେ ଆଜି ସୁଦ୍ଧା ସକାଳୁ ଶିବାଳୟରେ ଶଙ୍ଖ-ବାଜିବା ଦେଖାଯାଏ) ବଟପ ଓ ବଟପୀ ଉଭୟଙ୍କର ମିଳନ ହୋଇ ପାରିଲା ନାହିଁ । ଏଣୁ ବଟପୁରୁଷ ଓ ବଟପୀ ସ୍ତ୍ରୀ, ଚକ୍ରବାକ ପକ୍ଷୀଙ୍କୁ ତାଙ୍କର ପ୍ରେମଦାନ କଲେ । ପୌରାଣିକ ଉପାଖ୍ୟାନ ଅଛି ଚକ୍ରବାକ ଯୁଗଳଙ୍କର ରାତ୍ରରେ ମିଳନ ହୁଏନାହିଁ । ଏ କଥା ଜାଣି ବଟପୁରୁଷ ଓ ବଟପୀ ସ୍ତ୍ରୀ ତାଙ୍କର ପ୍ରେମଭାବ ଦାନ-କରି-ଦେଲେ ଏବଂ ଚକ୍ରବାକ ଯୁଗଳଙ୍କ ଠାରୁ ରାତ୍ରିରେ ଥିବା ଦୁଃଖଭାବ ନେଇଗଲେ । ଏପରି ବଟପୁରୁଷ ଓ ବଟପୀ ସ୍ତ୍ରୀ ଏବଂ ଚକ୍ରବାକ ଓ ଚକ୍ରବାକୀ ମାନଙ୍କ ମଧ୍ୟରେ ପ୍ରୀତି ଦାନ ଲାଗି ରହିଥାଏ । ପ୍ରଭାତ କାଳ-ହୋଇ-

ମିବାରୁ କୁଞ୍ଜକୁଟୀ-ଗବାକ୍ଷଲ । ସେହି ସ୍ୱରଶୁଣି ଚୋର ପରି ଅଭିସାରିକା ସ୍ତ୍ରୀ ପଳାଇ ଗଲ ଏବଂ ଚୋର ଚୋରି କରି ନେଇ ଯାଉଥିବା ଧନ, ଲୁଚୁଇଲ ପରି ଅଭିସାରିକା ସ୍ତ୍ରୀ ମାନେ କାନ୍ତ ଠାରୁ-ପାଇଥିବା ନଖ ଦନ୍ତ କ୍ଷତ ଚିହ୍ନ ଲୁଚୁଇଲେ । ଚୋରମାନେ ନିଷାଦଙ୍କୁ ଡରିଲ ପରି ଅଭିସାରିକା ସ୍ତ୍ରୀ ମାନେ ପଳାଇଗଲେ । ନକ୍ଷତ୍ର ଓ ବ ସକ ସନ୍ଧ୍ୟା ସ୍ତ୍ରୀ ମାନେ ରାତରେ ଅତି ସୁନ୍ଦର-ଦେଖା ଯାଉଥିଲେ । ପ୍ରଭାତ କାଳ-ହେତୁ ସେମାନେ ମଳିନ ଦିଶିଲେ ।

ବିଧୁ କୋଳ ଦିଗ ବେଶ୍ୟା ତେଜିଲା
ବେଗ ସବିତା ଭାବରେ ମଜ୍ଜିଲା

ବନଜମା ଯେ କୁଳଟା ସ୍ୱଭାବେ
ବିକର୍ତ୍ତନ ଉଲ୍ଲାସେ ଭୃଙ୍ଗ ଚୁମ୍ବେ

ବଳଭିକ ସନ୍ଧ୍ୟା ବାକ ରଚନା
ବିବୁଧ ଯେ ସେ ବେଶ୍ୟା ବଶ ସିନା

ବାୟସ ସାନ୍ଦ୍ର ଡାକକୁ ପେଚକ
ବୃକ୍ଷ କୋଡ଼େ ଲୁଚେ ଦ୍ୱୀନ ଖାତକ

ବିଚକ୍ଷଣା କୁମୁଦିନୀ ଦେଖଇଁ
ବିସ୍ମାରିତ ମୁଦ୍ରିତେ ସଖୀ ମୁହିଁ

ବସି ନପାରି ନରସି ଭ୍ରମର
ବ୍ୟର୍ଥ ବାଦ ଦେଇ କରେ ଝଙ୍କାର

ବାୟୁ ମନ୍ଦ ଗୁଣକୁ ଆଶ୍ରେ କରି
ବାସ ପୁଷ୍ପବାଟିର ନେଲା ହରି

ବଣେ, ସମୀର ହୋଇଲା ରଜକ
ବସ୍ତ୍ରହୁଁ ଅନୁସ୍ୱାରେ ଅଧିକ । ବୈ. ବି.

ପ୍ରାଚୀ ଦିଗ୍ ନାରୀ, ପ୍ରଭାତ-ହେବାରୁ, ବେଶ୍ୟାପରି-ଆଚରଣ-କଲା । ରାତିରେ-ଚନ୍ଦ୍ରଙ୍କୁ କୋଳ କରିଥିଲା । ସୂର୍ଯ୍ୟ ଉଦୟ ହେବା ଜାଣି ଚନ୍ଦ୍ରଙ୍କୁ-ଛାଡ଼ି, ସବିତାଙ୍କୁକୋଳ କଲା । ବେଶ୍ୟାମାନେ, ଜଣକୁ ଛାଡ଼ି ଆଉ ଜଣକୁ କୋଳ କରିଥାନ୍ତି । ରାତିରେ, ପଦ୍ମିନୀ-କୁଳଟା ସ୍ତ୍ରୀ ପରି ଭ୍ରମରକୁ-କୋଳକରି-ମୁଦ୍ରିତ-ହୋଇଥିଲା । ପଦ୍ମିନୀକୁ ଆନନ୍ଦ କରି ସୂର୍ଯ୍ୟୋଦୟ ହେଲେ । ଅରୁଣୋଦୟ ହେବାଜାଣି କାକମାନେ, ସତ୍ୟ ବାକ୍ୟ-ରଚନା କରି କହିଲେ, ବନ୍ଧୁମାନେ, ବେଶ୍ୟାସକ୍ତ-ଅଟନ୍ତି । ଦିଗଙ୍ଗନାମାନେ ମଧ୍ୟ ବେଶ୍ୟା'ତୁଲ୍ୟ-ହେଲେ । କାକ ସାହୁକାର ହେଲା । ସାହୁକାର ଡାକ ଶୁଣି, ଖାତକ ଲୁଚେ । କାକର-ଡାକଶୁଣି, ପେଚା ଯାଇ ଲୁଚିଲା । ପ୍ରଭାତ କାଳରେ,-ପେଚା-ଗଛର-କୋରଡ଼ରେ ଲୁଚିଯାଏ । ଏସବୁ ଦେଖି, କୁମୁଦିନୀ,`ସତୀବୋଲି -ଗର୍ବ-କରେ ।

ଚନ୍ଦ୍ର ଉଦୟରେ ବିକାଶ ହୁଏ । ଏବଂ ଦିବସରେ ମୁଦ୍ରିତ ହୁଏ । ଏଣୁ ଭ୍ରମର ସେଥିରେ ବସି ନପାରି ଝଙ୍କାର କରେ । ବାୟୁ ମନ୍ଦ ଗତିକୁ ଆଶ୍ରୟ କରି ବିକାଶ ପୁଷ୍ପର ବାସକୁ ହରଣ କଲା । ପୁଷ୍ପବତୀ ସ୍ତ୍ରୀର ବାସକୁ ରଜକ ନେଇଥାଏ । ଏଠାରେ ପବନ ନେଲା । ମାତ୍ର ପବନ ଭାବିଲା କେବଳ ଅନୁସ୍ୱାର ଯୋଗୁଁ ମୁଁ ଅଧିକ ଅଟେ ।

ଏଥୁଁ ଅନନ୍ତରେ ଯେ ଯାମିନୀ ହେଲା ଶେଷ
ବିଚ୍ଛେଦୀ ଚକ୍ର କାମିନୀ ପାଶେ ପରବେଶ ଯେ ।

ଶଶି ମନୋହାଷ୍ଟ୍ରୀ ଈଶି ସଙ୍ଗ କଲା ପାପ
ବଶେ ଦିବସେ ମଳିନ ହେଲା ଜ୍ୟୋତିଦୀପ ଯେ ।

ଅରୁଣ ମଣ୍ଡଳେ ଉଦେ ଭୃଟି ନାହିଁ କିଛି
କାଳି ବାରୁଣୀ ସେବିକା ରଙ୍ଗ ଆଜ ଅଛିଯେ ।

କକୁଭ ପ୍ରାଙ୍ଗଣେ ନିଜ ପତି ବଦନ ଗୁହିଁ
ପଦ୍ମିନୀ ହସିଲା ଦର ମୁକୁଳିତ ହୋଇ ଯେ ।
ଗର୍ଜ୍ଜି ଭୃଙ୍ଗରାଜ କୁମୁଦିନୀ ପାଶେ ଗଲେ
କୁଳଟା ହାଟକୁ ତାର ପରକାଶ କଲେ ଯେ ।

ବିଟପ କି ଗୁଢ଼ ଅଛି ନିର୍ଲଜ୍ଜ ସ୍ୱଭାବ
ପରେ ପ୍ରକଟ କଲେ ଆପଣା କଲ୍ ଭାବ ଯେ । ଲାଂବ

ରାତ୍ର ଶେଷ ହେବାରୁ ଚକ୍ରବାକ ପକ୍ଷୀ ବିଚ୍ଛେଦୀ କାମିନୀ ପାଶରେ ପ୍ରବେଶ ହେଲେ । ଶଶି-ମନୋହାଷ୍ଟ୍ରୀ ଗ୍ରାହୀ କରିବା ପାପ ସୂର୍ଯ୍ୟୋଦୟ ହେବାରୁ ମଳିନ ହେଲା, ଅରୁଣୋଦୟ ହେଲେ ମଧ୍ୟ ରାତ୍ରିର ଗୁଣ ଅନ୍ତର ଅଛି । ପୂର୍ବ ଦିଗରେ ନିଜ ପତିର ଉଦୟ ଦେଖି ପଦ୍ମିନୀ ଦର ମୁକୁଳିତ ହୋଇ ହସିଲା । ପଦ୍ମ କୋଢ଼ରେ ଶୟନ କରିଥିବା ଭ୍ରମର ପଦ୍ମକୁ ଛାଡ଼ି, କୁମୁଦ ପାଖକୁ ଗଲେ । ଭୃଙ୍ଗକୁଳ ଗର୍ଜ୍ଜନ କରି ପଦ୍ମିନୀର କୁଳଟା ହାଟକୁ-ପ୍ରକାଶ କଲେ । ବିଟପ ପୁରୁଷ ନିର୍ଲଜ୍ଜ ଭାବେ-ବାକ୍ୟ ପ୍ରକାଶ କଲାପରି ଭ୍ରମର-ଚତୁର୍ଦ୍ଦିଗରେ ଗୁଣୁ ଗୁଣୁ ସ୍ୱରରେ ପ୍ରଚାର କଲା । ଏପରି ପ୍ରଭାତ ବର୍ଣ୍ଣନା କରାଯାଇ ଅଛି ।

ସନ୍ଧ୍ୟା

ଚିତ୍ତକୁ ଦେଇ ଦିନାନ୍ତ ବର୍ଣ୍ଣନା ଶୁଣି ପଣ୍ଡିତ
ବରୁଣ ଦିଗକୁ ରବି ମଣ୍ଡିଲେ ଯାଇ

ଚଳିତ ରକ୍ତ ଚନ୍ଦନ      ନିର୍ମିତ ବୋହିତ ଯେନ

କି ଅବା ଆକାଶ ସିନ୍ଧୁ କୂଳକୁ ଯାଇ

ତରଣି ନିକର ମଞ୍ଜୁ      କି ସେ ଖଟାଇଲା ରଞ୍ଜୁ

ସହଜେ ମହା ଲଙ୍ଗଳ ଅସ୍ତ ପର୍ବତ

ଚହଲ ପକ୍ଷୀଙ୍କ ମେଳ      ହୁଲ ହୁଳ ପୋତ ମାଳ

ନାଗଶ୍ରୀ ବନ୍ଦାଣେ ଶୂନ୍ୟ ପଥେ ଗମିତ

ଚରମାଚଳର ଜ୍ୟୋତି      ଜଗତି ଖ୍ୟାତି ଜଗତି

ରବି ରଙ୍ଗା ଜବା କି ଶୋହିଲା ହିଙ୍ଗୁଳ

ଚର୍ଚ୍ଚିତ ରଚନାଗାର      କଲା କି ଏଣୁ ରୁଚିର

ଫଗୁ ଚୂର୍ଣ୍ଣ ପୂର୍ଣ୍ଣ ହୋଇ ଦିଗ ସକଳେ

ଚଣ୍ଡାଳକୁ ଛୁଇଁ ଦିନ      ସରସ୍ୱତୀ ଜଳେ ସ୍ନାନ

ଯାଇ କି ନିଜ ମନ୍ଦିରେ ଉତ୍ସୁକେ ଗମେ

ଚଞ୍ଚୁକୁ ଗୃହାନ୍ତ କାର      ଖଞ୍ଚିଲା ଲଭିଏ କର

ସଂସାର ରଙ୍ଗ ହେବାରୁ ଭ୍ରମ ଜନମେ

ଶବ ଭାନୁ ବନ୍ଧୁଧର      ଭୁଲକୁ ଅସ୍ତଶିଖରୀ

ବାର୍ଲା ଅନୁରାଗ ଆଗ ଭୂଳ ପକାଇ

ଚରାଚର ଚେତୁ ରଙ୍ଗ      ପୁଣି ଫୁସ ଅନୁରାଗ

ଭୁଲେ ଭୁଲେ ଲଘୁଗୁରୁ ଜାଣିବା ପାଇଁ

ଶର ରଙ୍ଗ ପାଟ ଶାଢ଼ୀ      ପିନ୍ଧନ୍ତି ଅଛି ସଜାଡ଼ି

ବାରୁଣୀ ତରୁଣୀ ଯିବ କି ପତି ପୁରେ

ଚକା ହୋଇକି ସିନ୍ଦୂର      ଶତା ଲଲାଟେ ସୁନ୍ଦର

ସବିତା ମଣ୍ଡଳ ଦିଶେ ସେହି ପ୍ରକାରେ । ର. ପ.

ଦିନ ଶେଷ ହେବାରୁ ରବି ପଶ୍ଚିମ ଦିଗକୁ ମଣ୍ଡନ କଲେ ।
ସେହି ସମୟରେ ରକ୍ତ ଚନ୍ଦନ ନିର୍ମିତ ଜାହାଜ ପରି ଦେଖାଗଲା ।

ମନେହେଲା ଆକାଶ ସିନ୍ଧୁ କୂଳରେ ଯାଇ ଲାଗିଲା । ସେହି ଜାହାଜଟି ଲଙ୍ଗର ଖଟାଇଲା ପରି ଜଣାଗଲା । କାରଣ ଅସ୍ତ ପର୍ବତ ଲଙ୍ଗର ଖଟାଇଲା ପରି ଦୃଶ୍ୟ ହେଲା ।

ସୂର୍ଯ୍ୟାସ୍ତ ସମୟରେ ପକ୍ଷୀମାନଙ୍କର କୋଳାହଳ ରବ, ହୁଳ ହୁଳ ପରି ଜଣାଗଲା । ଜାହାଜ ଖଟାଇଲା ପରେ ସ୍ତ୍ରୀ ମାନେ ଜାହାଜ ବନ୍ଦାଣ କରନ୍ତି । ପକ୍ଷୀମାନେ ଶୂନ୍ୟରେ ଗମନ କରି ହୁଳ ହୁଳି ରବ କଲାପରି ଜଣାଗଲା, ରବି ଅସ୍ତ ସମୟରେ ଅସ୍ତ ପର୍ବତର ଜ୍ୟୋତି ଅତି ସୁନ୍ଦର ଦିଶିଲା । ଏପରି ମନେ ହେଲା ଚନ୍ଦ୍ରକର ରବିଙ୍କୁ ହିଙ୍ଗୁଳରେ ଚିତ୍ର କରୁଅଛନ୍ତି କି ? । ଏହି ସମୟକୁ ଦେଖି କନ୍ଦର୍ପ ଚିତ୍ରଶୈଖେଳ ପ୍ରକାଶ କଲା । ଚତୁର୍ଦ୍ଦିଗରେ ଫଗୁପୂର୍ଣ୍ଣ ହେବାପରି ଜଣାଗଲା । ଧାନ ଚଣ୍ଡାଳକୁ ସ୍ପର୍ଶ କରି ସରସ୍ୱତୀ ଜଳରେ ସ୍ନାନ କଲା ପରି ଦୃଶ୍ୟ ହେଲା । ଅସ୍ତକାଳୀନ ରବିଙ୍କର ରକ୍ତିମା ଦେଖି, ଶୁକ ନିଜର ଚଞ୍ଚୁକୁ ଦେଖିଲା । କାରଣ ନିଜ ଚଞ୍ଚୁ, ଏହି ରଙ୍ଗକୁ ପରାସ୍ତ କରୁଅଛି କି ? ଏହି ଭ୍ରମ ଉଦୟ ହେଲା । ଅସ୍ତ ଶିଖଣ୍ଡିବାଳୀ ଅନୁରାଗ ଧରି, ଚନ୍ଦ୍ରଗ୍ରହୁ ବନ୍ଧୁ ଭୁଲ ପକାଇଲା ପରି ଜଣାଗଲା । ଏଣୁ ଚରାଚର ରଙ୍ଗ ବର୍ଣ୍ଣକୁ ଫୁସ ଅନୁରାଗରେ ଲଘୁ ଓ ଗୁରୁ ଜାଣିବା ପାଇଁ ଓଜନ କରି ପକାଇଲା । ବାରୁଣୀ ତରୁଣୀ ପତି ପୁରକୁ ଯିବା ଉଦ୍ଦେଶ୍ୟରେ ରଙ୍ଗ ଶାଢ଼ୀ ସଜାଡ଼ି ପିନ୍ଧି ଅଛି । ଅସ୍ତକାଳୀନ ରବି ଗୋଲାକାରରେ ସିନ୍ଦୂର ଟିକା ପରି ଜଣା ଯିବାରୁ ବାରୁଣୀ ରାଣୀ ସିନ୍ଦୂର ଲଗାଇବା ପରି ଜଣାଗଲା ।

ସନ୍ଧ୍ୟା

ଗୃହିଣୀ ଉପରେ ନୃପତି ନନ୍ଦିନୀ
ସନ୍ଧ୍ୟାରେ ବସିଲା

ଚନ୍ଦ୍ରମା ମଣ୍ଡଳ ଆଖଣ୍ଡଳ ଦିଶେ
ଏମନ୍ତ ଦିଶିଲା
ପୂର୍ବ କଣ୍ଣ ପୂର୍ବ କନ୍ଦସ୍ପ ଦସ୍ପରୁ
ବାହାର ହଦରେ
ନଳିନ ବନ ମଳିନ କରି ପଙ୍କ
ଅଙ୍କିତ ଶରୀରେ
ମଦୋଜ୍ଜ୍ୱଳ କରେ ପୁଷ୍କରେ ବର୍ଷନ୍ତି
ଅମୃତ ପୃଷନ୍ତ
ସେହି ଶ୍ରୀବଳୀ ଢଳ ଢଳ ଯେ ପ୍ରଭା
ଦିଶରେ ଦିଶନ୍ତି
ନିଷ୍ଟପ୍ତ ସେ ରାମ ରାଜା କଉଶିକ
ଆନନ୍ଦ ଦେବାରେ
ସୁ ବେଳେ ବନ୍ଦିତ ଲକ୍ଷ୍ମଣ ସହିତ
ସେ ରୁଷ ସଙ୍ଗରେ
ଅଧିକ କର ପ୍ରତାପ ନାଶ କରି
ହରିତ ପ୍ରକାଶ
ଏକ ବିଶ୍ୱାସଣ ଦର ହର ରୁଚ
ଜଗତ ଉଲ୍ଲାସ । କୋ. ବ୍ର. ସୁ.

ନୃପ ନନ୍ଦନୀ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ରାନ୍ଦନୀ ଉପରେ ବସିଲା । ସନ୍ଧ୍ୟା ସମୟ ଉପଗତ ହେଲା । ପୂର୍ବ ଦିଗରେ ଚନ୍ଦ୍ରମା ମଣ୍ଡଳ ଏପରି ଦିଶିଲା । ଐରାବତ ହସ୍ତୀ ପୂର୍ବକନ୍ଦର ଦନ୍ତରୁ ବାହାରି ନଳିନୀ ବନକୁ ମଳିନ କଲା । ଏବଂ ପଙ୍କ ଅଙ୍କିତ ଶରୀରରେ ହିଦରେ କି ? ଅର୍ଥାତ୍ ସନ୍ଧ୍ୟା ଆଗମନରେ ନଳିନୀ ମୁଦ୍ରିତ ହୋଇ ମଳିନ ଦିଶେ । ହସ୍ତୀ ମଦୋଜ୍ଜ୍ୱଳ କରେ ପୁଷ୍କରେ-ପଦ୍ମପୁଷ୍ପରେ ଅମୃତ

ପୁଷ୍ପନ୍ତ-ଜଳ ବିନ୍ଦୁ ସିଞ୍ଚଇ । ଏ ଚନ୍ଦ୍ର ମନ୍ଦୋଜ୍ଜ୍ୱଳ କରେ-ଶୁଭ୍ର କିରଣରେ ଆକାଶରେ ସୁଧା ବିନ୍ଦୁକୁ ବର୍ଷିଛି । ସେହି ସୁଧା ବିନ୍ଦୁ ସବୁ ଉଆବଳୀ-ତାରକା ସମୂହପରି ଢ଼ଳ ଢଳ ହୋଇ ପ୍ରତି ଦିଗରେ ଦିଶଇ । ଏଚନ୍ଦ୍ର ନଷ୍ଟ୍ରୁ ରାମ ଅଟେ । ରାମ ବଣ୍ଟାମିନଙ୍କୁ ଆନନ୍ଦ ଦେଇଥିଲେ । ସୁବେଳ ପର୍ବତରେ ବନ୍ଦିତ ହୋଇ ଭ୍ରାତା ଲକ୍ଷ୍ମଣରେ ଓ ଭଲ୍ଲୁକମାନଙ୍କ ସହିତ ଥିଲେ । ଏ ଚନ୍ଦ୍ର ପେଚକ ମନଙ୍କୁ ଆନନ୍ଦ ଦେଉଛି । ସୁବେଳ-ଉତ୍ତମ ସମସ୍ତ ବନ୍ଦିତ ହୋଇଛି । ଏବଂ ନକ୍ଷତ୍ର ମାନଙ୍କ ସଙ୍ଗରେ ଥାଇ ଲକ୍ଷ୍ମଣ କଳଙ୍କ ଚିହ୍ନରେ ମିଳିତ ହୋଇଅଛି । ରାମଚନ୍ଦ୍ର ହରି-ମର୍କଟମାନଙ୍କ ସହ ପ୍ରକାଶ କରି ଅଧିକ କରି-ରାବଣର ପ୍ରତାପ ନାଶ କରିଥିଲେ । ଏବଂ ବିଭୀଷଣର ଭୟ ନାଶକରି ଜଗତକୁ ଉଲ୍ଲାସ କରିଥିଲେ । ଏ ଚନ୍ଦ୍ର ସୂର୍ଯ୍ୟଙ୍କର ତାପ ନାଶ କରି ଜନମାନଙ୍କୁ ପ୍ରକାଶ କରୁଅଛି । ଏକବଚକୋର ପକ୍ଷୀର ଭୀଷଣ ଭୟ ନାଶ କରି ଦୀପ୍ତି ଦ୍ୱାରା ଜଗତକୁ ଉଲ୍ଲାସ କରେ ।

## ଗ୍ରୀଷ୍ମକାଳ ସନ୍ଧ୍ୟା

ଏଥୁଅନ୍ତେ ଶୁଣ ରସ          ଗ୍ରୀଷମେ ନିଶି ପ୍ରବେଶ
ଉଦୟ ତାରାଙ୍କବେଶ ହେଲେ ଆକାଶେ

ଚନ୍ଦ୍ର ମୁଖ ଚନ୍ଦ୍ର ନିନ୍ଦ          ନେତ୍ରଦନେ ହୀରକ ଚନ୍ଦ
ଫିଙ୍ଗିଛି ତାତ ସିନ୍ଧିରେ କାମକ ରେଷେ
ବେଶ ହେବ କ ରଚି ବାଳୀ
ସ୍ଫଟିକ ପେଟୀରେ କିବା କସ୍ତୁରୀ ଦଳ

ଆଜ କ ବଜ୍ରବନ୍ଧକ          ହୋଇବ ବଜ୍ରବରକ
ମଲ୍ଲୀ ମାଳ ଦେଇ ବାଧ କରନ୍ତେ ମଣି

ବିଚିତ୍ର ଏ ସ୍ୱୟମ୍ବର ନାୟିକା ବରିଲା ବର
ଏତେ କାଳେ ଦେଖାଦେଲା ଏ କଥା ପୁଣି
ରବି କରେ ମହୀ ମହିଳା
ତାପି ହୋଇଥିଲା କି ଚନ୍ଦନ ଲେପିଲା । ଲା. ବ.

ଗ୍ରୀଷ୍ମ କାଳରେ ରବି ଅସ୍ତ ପରେ ଆକାଶରେ ଚନ୍ଦ୍ର ଉଦୟ ହେଲେ । ଚନ୍ଦ୍ର ଉଦୟ ହେତୁ ଚକ୍ରବାକ ପକ୍ଷୀଙ୍କର ସୁଖ ଛେଦନ କଲା । ଯଥା ରାତ୍ର ହେଲେ ଚକ୍ରବାକ ଓ ଚକ୍ରବାକୀଙ୍କର ମିଳନ ହୁଏ ନାହିଁ । ଶ୍ରୀକୃଷ୍ଣ ଗଜକୁ ଉଦ୍ଧାରଣ କରିବା ଉଦ୍ଦେଶ୍ୟରେ ଚକ୍ର ଫିଙ୍ଗି ନକ୍ରକୁ ଛେଦନ କରିଥିଲେ । ଏବେ ଶ୍ରୀକୃଷ୍ଣଙ୍କର ପୁତ୍ର ପ୍ରଦ୍ୟୁମ୍ନ ହୀରକ ଚକ୍ର ଫିଙ୍ଗି ଚକ୍ରବାକ ପକ୍ଷୀର ସୁଖ ଛେଦନ କରୁଅଛି । ରଜନୀରାଣୀ ବେଶ ହେବା ପାଇଁ ସ୍ଫଟିକପେଟୀରେ କସ୍ତୁରି ଦାନା ରଖିଥିଲା । ମାତ୍ର ରଜନୀର ଆଗମନ ହୋଇ ଯିବାରୁ ତାହାକୁ ତୁଢ଼ି ଭୁଲିଗଲା । ଏଣୁ ଚନ୍ଦ୍ର ଦେହରେ କଳଙ୍କ ଥିବା ପରି ଜଣା ଯାଉ ଅଛି । ଗ୍ରୀଷ୍ମ କାଳର ଚନ୍ଦ୍ର ଉଦୟ ଦେଖି କବି କହୁ ଅଛନ୍ତି, ଆଜି ବସୁନ୍ଧରୀକୁ ଚନ୍ଦ୍ର ବିବାହ ହେବ କି ? ବିବାହ ବେଳେ ଫୁଲ ମାଳ ଦିଆଯାଏ । ଏଣୁ ରଜନୀର ମଲ୍ଲୀ ଫୁଲମାଳ ରୂପକ ନକ୍ଷତ୍ର ମାଳାକୁ ଧରି ବରଣ କରୁ ଅଛି କି ? ଖରାକାଳ ହେତୁ ରବି କିରଣରେ ମହୀ ମହିଳା ତାପି ହୋଇଥିଲା । ଚନ୍ଦ୍ର ଉଦୟ ହୋଇ ଚନ୍ଦ୍ର କିରଣ ବିକିରଣ ହେବାରୁ ପୃଥ୍ୱୀ ଶୀତଳ ହେଲା । ଏପରି ହେଲା ଯେ ତାପିତ ପୃଥ୍ୱୀ ଉପରେ ଚନ୍ଦନ ଲେପନ କଲାପରି ଜଣାଗଲା । ସ୍ୱୟମ୍ବର ବେଳେ ସ୍ତ୍ରୀ ପୁରୁଷକୁ ବରଣ କରେ । ମାତ୍ର ସୌର ଜଗତର ବିଚିତ୍ର ସ୍ୱୟମ୍ବର ଏଠି ଯେ ପୁରୁଷ ସ୍ତ୍ରୀ କୁ ଫୁଲମାଳ ଦେଇ ବରଣ କରୁଅଛି ।

## ବନ ବର୍ଣ୍ଣନା

ବୃନ୍ଦ ଭାନୁ ଭାନୁ ଭାନୁ ପ୍ରଭା ତାପ ନାହିଁ
ବୃତ ତମାଳ ମାଳ ମାଳତୀ ଲତା ଯହିଁ ଯେ,
ବହଇ ନିର୍ଝର ଝର ଝର ଅବିରତ
ବିଶେଷ ତରଙ୍ଗ ରଙ୍ଗ ରଙ୍ଗ ରଙ୍ଗିଣୀ ଶୋଭିତ ଯେ,
ବହି ଚନ୍ଦ୍ର ଚନ୍ଦ୍ର ଚନ୍ଦ୍ର ଶୀତଳକୁ ବାତ
ବହେ ମନ୍ଦ ମନ୍ଦ ମନ୍ଦ ସୁତ କରେ ରୁଚି ଯେ,
ଷଟେଞ୍ଜ ଘନ ଘନ ଘନ କୁଶ କଣ ଯଥା
ବୃଷ୍ଟି ମଧୁର ମଧୁରେ ମଧୁ ରଜେ ଯଥା ଯେ,
ବିଭ୍ରାଜିତ ଭୃଙ୍ଗ ଭୃଙ୍ଗ ଭୃଙ୍ଗକରେ କେଳି
ବମ୍ପ ବମ୍ପ ବମ୍ପତା କ ପୁଷ୍ପ ହାସେ ଝଳ ଯେ,
ବୋଲେ ଶୃଙ୍ଖଳାରେ ରଘୁନାଥ ସୀତା ମତ
ବିଚିତ୍ର ଚିତ୍ରକୂଟେ କୂଟେ ଭ୍ରମନ୍ତି ଯେ
ଭ୍ରମନ୍ତି ଜୟନ୍ତ ଅନ୍ତ ଭାବା ସନ୍ତୀ
ବାସନ୍ତୀ ସନ୍ତରେ ଫୁଲ ଫୁଲରେ ପ୍ରବର୍ତ୍ତି ଯେ
ବର୍ତ୍ତିକର୍ଣ୍ଣିକ ଆଳ ଆଳ ଯେ ବରହ୍ନତ
ବିହରନ୍ତି ମାନ ମାନ ଶୁକ ସୁକବିତ ଯେ
ବିତର ତରଳ ନେତ୍ର ନେତ୍ର ସୁବାସିନୀ
ବାସିନୀ ସୁଜାତ ଜାତି ସ୍ୱଭାବ ଭାବନ ଯେ । ବୈ. ବି.

ଭଗବାନ୍ ଶ୍ରୀ ରାମଚନ୍ଦ୍ର ଚିତ୍ରକୂଟ ପର୍ବତରେ ଥିବା ସମୟରେ କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ବନ୍ୟ ଦୃଶ୍ୟ ବର୍ଣ୍ଣନା କରି ଅଛନ୍ତି । ସେହି ବନରେ ତମାଳ ଓ ମାଳତୀ ଲତା ବୃତ ହୋଇ ରହିଥିବା ହେତୁ ରବିଙ୍କର କିରଣ ପଡ଼ୁନାହିଁ ଏବଂ ବନ ଅଗ୍ନିର

ତାପ ମଧ୍ୟ ନାହିଁ । ସେହି ପର୍ବତରୁ ସର୍ବଦା ନିର୍ଝର ଝରୁଅଛି । ତରଙ୍ଗିଣୀ ବୃକ୍ଷ ପୁଞ୍ଜକ ସମୁଦ୍ର ତରଙ୍ଗ ପରି ଝୁଲୁଛି । ଜଳ କର୍ପୂର ଚନ୍ଦ୍ର ଶୀତଳ ଗୁଣକୁ ବହନ କରି ଶୀତଳ ପବନ ମନ୍ଦ ମନ୍ଦ ହୋଇ ବହୁଛି ଏବଂ କୋକିଳ ମଧ୍ୟ ରାବ କରୁଅଛି । ସାନ୍ଦ୍ର ମେଘରୁ ଜଳ ବୃଷ୍ଟି ହେଲାପରି ମହୁଲ ଗଛର ଫୁଲରୁ ମକରନ୍ଦ କଣା ବୃଷ୍ଟି ହେଉଅଛି । ଭୃଙ୍ଗରାଜ ଗଛ ଗୁଚ୍ଛଗୁଚ୍ଛ ଗଛ ଶୋଭା ପାଉ ଥିବାରୁ, ସେଥିରେ ଭ୍ରମର କେଳି କରୁଅଛି । ସେହି କାନନ ରୁଚିର ବଣ ସୁନ୍ଦରୀ ସ୍ତ୍ରୀ ହେଲା ସୁନ୍ଦରୀ ସ୍ତ୍ରୀ ହସିଲା ପରି ବୃକ୍ଷରେ ପୁଷ୍ପ ଗୁଚ୍ଛକ ହସିଲା । ଭଗବାନ୍ ରାମଚନ୍ଦ୍ର ସୀତାଙ୍କୁ ପ୍ରବୋଧନା ଦେବା ଉଦ୍ଦେଶ୍ୟରେ ବନର ଦୃଶ୍ୟ ଗୁଚ୍ଛକ ଦେଖାଉ ଅଛନ୍ତି । ବନରେ କଣ୍ଟକ ପୁଷ୍ପରେ ବିସ୍ତାର ହୋଇଅଛି ।

ଲତା ସମୂହ ଜୟନ୍ତୀ ବୃକ୍ଷ ଅତି ପ୍ରଭାବନ୍ତ ହୋଇ ସୁନ୍ଦର ଢଳଇ ସଞ୍ଚ ସାଧ୍ୱୀ ମାଧବୀ ଲତା, ଯୁଥିକା ଲତାରେ ଫୁଲ ଫୁଟି ଅତି ଶୋଭା ଦେଖା ଯାଉଅଛି ଡାହୁକଆ ଚଢ଼େଇ ଓ ବାୟା ଚଢ଼େଇ ଶ୍ରେଣୀ ଶ୍ରେଣୀ ହୋଇ ବିହାର କରନ୍ତ୍ୟ, ଏବଂ ମୟୂରମାନେ ମଧ୍ୟ ଉନ୍ମତ୍ତ ଉନ୍ମତ୍ତ ହୋଇ ଭ୍ରମଣ କରୁଅଛନ୍ତି, ଶୁକ ପକ୍ଷୀ ସୁକବି ପରି ବନରେ ଗାନ କଲା । ବ୍ୟାସ କବିଙ୍କର ପୁତ୍ର ଶୁକ ପରିହୋଇ ଗାନ କଲା । ଅର୍ଥାତ୍ ଶୁକଦେବ ବହୁ ଗ୍ରନ୍ଥ ଲେଖି ଗାଇଲା ପରି ଶୁକପକ୍ଷୀ ଗାନ କଲା । ନେତ୍ରକୁ ବାସିମା (ମୃଗ ମଦ ସୁଗନ୍ଧମା) ହେ ସୀତେ ସୁଜାଣ ମାଳତୀ ଲତା, ସ୍ୱଭାବଣ ଅର୍ଥାତ୍ କୁସୁମ ବଣ-ହୋଇ, ବାସିମା (ଆମୋଦ ବଣ) ହୋଇଅଛି । ହେ ସୀତେ ତରଳ ନେତ୍ରେ ଏହି ପ୍ରକୃତ ଉପରେ ଦୃଷ୍ଟି ନିକ୍ଷେପ କର ।

ପୁଷ୍ପରାଗ ପତ- ନରେ ସୁ ଘଟନ
କେଉଁ ଘରଣୀ ହୋଇଥିଲେ

ବିସ୍ମର ଅନୁସ୍ମରି          ସୁକୁମାଶ୍ରୀ କ
ସେହିରେ ବିଜେ କରାଇଲେ
ବନେ ଜବନେ
ମିତ୍ରୁଁ ବୋଇଲ ଦିବ୍ୟବାଳା
ବିଟପ ବିଟପୀ          ଏଥିତ ବହୁତ
କହୁଁତ ଥିଲୁ ଆନଲୀଳା । କୋ· ବ୍ର· ସୁ·

କୋଟୀ ବ୍ରହ୍ମାଣ୍ଡ ସୁନ୍ଦରୀ ସଖୀମାନଙ୍କ ସହ ବନରେ ବୁଲୁ ଥିବା ବେଳେ ସଖୀମାନେ କହିଲେ ଏହି ବନରେ ବ୍ରଜ ଲୀଳା ହେଉଛି ଚାଲ ଦେଖିଯିବା ଏହି କଥାରେ ରାଜନନ୍ଦିନୀ ସମ୍ମତ ହେବାରୁ ଯେଉଁ ମାର୍ଗରେ ପୁଷ୍ପବାଗ ପଡ଼ି ସୁନ୍ଦର-ଦେଖାଯାଉ ଥିଲା ସେହି ମାର୍ଗରେ ସଖୀମାନେ ଶୀଘ୍ର ନେଇଗଲେ । କୋଟୀ ବ୍ରହ୍ମାଣ୍ଡ ସୁନ୍ଦରୀ କହିଲ ହେ ସଖୀମାନେ ମୋତେ ତ ଅନ୍ୟ କଥା କହି ଆଣିଲ । ଏଠାରେ ତ କେବଳ ବୃକ୍ଷ ଲତା ଛଡ଼ା-ଆଉ କିଛି ନାହିଁ ।

ବାଣୀଜା କହ          ପ୍ରମାଣ ମାଣବକ
ମୃଗ ଜାତ ନେହା ଉତ୍ତର
ଏଥିରେ ବାଳା          କାଳାନ୍ତରେ ଅଛୁରେ
ଏହି ବିହାର ବ୍ୟବହାର
ଥିବା ବେଳରେ
ସୁମନା ବଳୀ ମନୋହରେ
ପ୍ରକର ବିରଞ୍ଚି          ଲାଳସ ଗଣିକା
ଭବେ ସୁବାସ ହରି ବାରେ । କୋ· ବ୍ର· ସୁ·

ଶିଶୁ ମୃଗଜାତ ନେହର ଉତ୍ତରକୁ ବାଣୀଜା ସଖୀ ପ୍ରମାଣ କହ । କହିଲ-ରେ ବାଳା ଏଥି ବିଟପ ଓ ବିଟପୀ ବ୍ୟବହାର ବହୁ

କାଳରୁ ଅଛି । ଏଠାରେ ଦେବତାମାନେ ମନୋହର ରୂପ ଥିବା ବେଳେ ପ୍ରକର ବରଞ୍ଚ ବୃନ୍ଦ ବୃନ୍ଦ ବେଶ୍ୟାଭାବରେ ବଶ ହୋଇ ତାହାର ଉତ୍ତମ ବସ୍ତୁକୁ ହରଣ କରିଥିଲେ । ବନରେ ପୁଷ୍ପ ସମୂହ ମନୋହର ରୂପେ ସ୍ତବକ ବଢ଼ିଚ ଥିବା ବେଳେ ପବନ ଗଣିକା- ସୂର ଭାବରେ ବଶ୍ୟ ହୋଇ ତାହାର ଉତ୍ତମ ଗନ୍ଧ ହରଣ କରିବାରେ ଇଚ୍ଛୁକ ହୋଇଅଛି ।

ଯେବନ ଧନ- ସମାନ ନାହିଁ ଅନ୍ୟ
ଯେବତ ପୁଣ୍ୟ ବନ୍ତ ଜନ
ଶୁକ ପିକ ସ୍ତୁଥ କଥସ୍ତୁନ୍ତୀ ଚୈତ୍ର-
ରଥ ନନ୍ଦନର ଜନମ୍ମ
ସତ ଏକଥା
ପ୍ରସବ ସୁଲକ୍ଷଣ ସନ୍ତି
ଫୁଲ ପତନ ସ୍ତନ ନାରିକେଳରେ
ପୟ ପରିପୂର୍ଣ୍ଣ ହୋଇଛି । କୋ. ବ୍ର. ସୁ.

ଏହି ବନ ଧନ୍ୟ ଅଟେ । ଏହା ସମାନ ବନ ଆଉ ନାହିଁ । ଯେଉଁମାନେ ପୁଣ୍ୟବନ୍ତ ହୋଇ ଜନ୍ମ ଗ୍ରହଣ କରିଥାନ୍ତି ସେମାନଙ୍କର ଏହି ବନ ବିହାର ଉପଯୁକ୍ତ ଅଟେ । ଶୁକ ଓ କୋକିଳର ରବରୁ ଜଣାଯାଏ ଏବନ ଚୈତ୍ରରଥ (କୁବେର ବନ) ଠାରୁ ଅଧିକ ଅଟେ । ନନ୍ଦନ (ଇନ୍ଦ୍ରଙ୍କ ବନ) ଠାରୁ ଶ୍ରେଷ୍ଠ ଅଟେ । ଅର୍ଥାତ୍ ଜନମ୍ମ ଅଟେ । ଏକଥା ସତ ଯେହେତୁ ପ୍ରସବର ଲକ୍ଷଣମାନ ଏଠାରେ ଅଛି । ପୁଷ୍ପ ପତନ ହୋଇଅଛି । ନାରିକେଳ ସ୍ତନ ହେଲା ତହିଁରେ ଥିବା ପୟ (ଜଳ) ଦୁଗ୍ଧ ସେ ତହିଁରେ ପୂର୍ଣ୍ଣ ହୋଇଅଛି ।

## ପ୍ରକୃତି ବିବାହ

ଦେଖିଲେ ଆଗମ ଅତି ଅଭିରାମ
ଯେ ଦେଖିବ ଏଥି ପ୍ରଶସ୍ତି
ମନରୁ ଉତ୍ପତ୍ତି ରତି କାମମୂର୍ତ୍ତି
ମନ୍ତ୍ରେକ ବନ୍ଧୁ ହେଉଛନ୍ତି
କୋକିଳ
ଗାୟକ ଉଚ୍ଚେ ଗାଏ ଗୀତ
ଝିଙ୍କାରି ଝଙ୍କାର ଗୁଞ୍ଜରଟ ପ୍ରାନ୍ତ
ହତ ସୁବାଦ୍ୟରେ ବାଦିତ
ଶୁକ ଭରଦ୍ୱାଜ ବେଦ କୁଳ ଦ୍ୱିଜ
ଶ୍ରୁତି ମନ୍ତ୍ର ବାକ୍ୟ ଉଚ୍ଚାର
ମଲ୍ଲୀକଢ଼ି ଶଙ୍ଖ ଅସଂଖ୍ୟ ଅନେକ
କନକ ମଧୁଶ୍ରୀ ମାଧୁଶ୍ରୀ
ମଧୁପ
ଚୁମ୍ବନେ ଧ୍ୱନି କରେ ଜାତ
ମରୁତ ଅଧିକାଂଶ— ଦେନ ସୁବାସ
ରଙ୍ଗଣୀ ଠାରୁ ଗତା ଗତ
ନିକୁଞ୍ଜ କୁଟୀର ଛୁପା ମଣ୍ଡପର
ତଳେ ବେଦିକାର ନିର୍ମାଣ
ଫୁଟି କୁରୁବକ ପାବକ ଦୀପକ
ପଲ୍ଲବ ପାଟ କୁଞ୍ଚା ଗଣ
କେତକୀ
ମାଳୀ ଦେଇ ଥିବା ମୁକୁଟ

ଜମ୍ବୁକ ନାରକେଳ          ପରିପୂରିତ
ଶାଳକ ସୁରଞ୍ଜି ପ୍ରକଟ
ହାରିଦ୍ର ସିନ୍ଦୂର          ପକ୍ୱ ଫଳ ଧରି
ସହକାର ଶୋଭା ବିଶେଷେ
ଗବାକ୍ଷ ଶୃଙ୍ଗ          ସମ୍ପୁଟ ଚମ୍ପୁ ମଞ୍ଜୁଁ
ସ୍ୱର୍ଣ୍ଣ ମାଣିକ୍ୟ ଜ୍ୟୋତି ଦିଶେ

ଅକ୍ଷତେ

ବେନ ବଂଶରେ ଜାତ ଘୋଷ
ବ୍ରାହ୍ମଣୀରେ ପୁଣି          ବନ୍ଧିତ ହୋଇଛନ୍ତି
ସାର ଅନୁରାଗ ପ୍ରକାଶ
ହିଙ୍ଗୁଳ କପର୍ଦ୍ଦୀ          ବାଜକର କର
ରଙ୍ଗାଙ୍କିତ ଦୂତେ ଦେଖାଇ
ଶୁଦ୍ଧାନ୍ତ ପ୍ରକାରେ          ପ୍ରକାର ସନ୍ଧିରେ
ଆବାପ ଠାରେ ସମ୍ଭବଇ
ଯତନେ
ପରାଗ କର୍ପୂର ପତନେ
ଶେଫାଳିକା ଆଳି          ସଜାଡ଼ି ସଂଯୋଗ
ଦେବାକୁ ଶଯ୍ୟାକୁ ସୁମନେ । କୋ· ବ୍ର· ସୁ·

କୋଟୀ ବ୍ରହ୍ମାଣ୍ଡ ସୁନ୍ଦରୀର ସଖୀ ଅବଧୂତି ଉପାଧ୍ୟାୟୀ କୋଟୀ ବ୍ରହ୍ମାଣ୍ଡ ସୁନ୍ଦରୀର ପତ୍ର ନେଇ ପୁଷ୍ପପୁର ରାଜକୁମାରର ଉପବନରେ ପ୍ରବେଶ ହେଲେ । ଉପାଧ୍ୟାୟୀ-ବନ୍ଧୁ ଉପାୟରେ ପଣ୍ଡିତା ଅବଧୂତି-ଗୁଟି ବିଦ୍ୟାରେ ପଣ୍ଡିତା । ପୁଷ୍ପପୁର ରାଜ କୁମାର ଆରାମରେ ପ୍ରବେଶ ହୋଇ ଏପରି ବିଶ୍ୱାସ କଲେ

ରତି ଓ କନ୍ଦର୍ପ ମନରୁ ଉତ୍ପତ୍ତି ହୋଇ ମୂର୍ତ୍ତିମନ୍ତରେ ବିବାହ ହେଉ ଅଛନ୍ତି କି ? ଏହି ବନରେ କୋକିଳ ଗାୟକ ପରି ଉଚ୍ଚସ୍ୱରେ ଗୀତ ଗାଉଅଛି । ଝିଙ୍କାରି ଝଙ୍କାର ଖଞ୍ଜଣି ବାଦ୍ୟ ପରି ବାଦିତ ହେଉଅଛି । ଶୁକ ପକ୍ଷୀ ଓ ଭରଦ୍ୱାଜ ପକ୍ଷୀ ଦୁହେଁ ବେନି କୁଳର (ବରକନ୍ୟା ଉଭୟ କୁଳର) ଦ୍ୱିଜ-ବ୍ରାହ୍ମଣ ହେଲେ । ବିବାହ କାଳରେ ବ୍ରାହ୍ମଣ ମାନେ ଅତି ସୁମଧୁର ବେଦ ଉଚ୍ଚାରଣ କଲା ପରି ଶୁକ ଓ ଭରଦ୍ୱାଜ କର୍ଣ୍ଣ ମଧୁରକର ବାକ୍ୟ ଉଚ୍ଚାରଣ କରୁ ଅଛନ୍ତି । ଅସଂଖ୍ୟ ମଲ୍ଲୀକର୍ତ୍ତି ଶଙ୍ଖ ଏବଂ ଅନେକ କନକ-ଦୁଦୁରିଫୁଲ-ମଧୁସ୍ୱମହୁରି ମହୁରି ବାଦ୍ୟର ମାଧୁରୀକୁ ଧରିଛି । ଯେପରି ମଧୁପମାନଙ୍କ ଚୁମ୍ବନରେ ଧ୍ୱନିକ ଜାତ କରୁଅଛନ୍ତି । ଅଧିକାଂଶ ବର ଓ କନ୍ୟାକର୍ତ୍ତା ଉଭୟେ ରଙ୍ଗଣୀ ଠାରୁ ଉତ୍ତମ ବିଧି ବେଦନ ଗତାଗତ ହେଲା ପରି ମରୁତ -ପବନ ରଙ୍ଗଣୀ ପୁଷ୍ପରୁ ସୁବାସ ନେଇ ଗତାଗତ କରୁଅଛି । କୁଞ୍ଜ କୁଟୀର ସବୁ ଗୁମ୍ଫା ମଣ୍ଡପ (ବିବାହ ମଣ୍ଡପ) ତାହାତଳେ ବୃକ୍ଷମୂଳ ବେଦିକାମାନ ନିର୍ମିତ ହୋଇଅଛି ।

ପ୍ରସ୍ଫୁଟିତା କୁରୁବକ ପୁଷ୍ପକ-ପ୍ରଜ୍ୱଳିତ ପାବକ-ହୋମାଗ୍ନି ନବପଲ୍ଲବ-ନୂଆଁ ପତ୍ର ପାଟକୁଞ୍ଜ କେତକୀ ମାଳ ଦେଇଥିବା ମୁକୁଟ ବିବାହ ସ୍ଥଳରେ ଗୁଆ ନଡ଼ିଆ ଥିଲାପରି ଏଠାରେ କ୍ରମୁକ-ଗୁଆ ନାରିକେଳ ବୃକ୍ଷମାନ ପରିପୂରିତ । ବିବାହରେ ଶାଳକ ସୁରକ୍ଷା ଦେଉଥିଲାପରି ଏଠାରେ ଶାଳବୃକ୍ଷ ଏବଂ ଚମ୍ପକ ବୃକ୍ଷମାନ ବିଦ୍ୟମାନ ଅଛନ୍ତି । ଭୃଙ୍ଗମାନେ ବହିଥିବା ଚମ୍ପକ ଶୃଙ୍ଗନିର୍ମିତ ଫରୁଆ ମଧ୍ୟରୁ ସ୍ୱର୍ଣ୍ଣ ଏବଂ ମଣି ମାଣିକ୍ୟ କେୟାଷ୍ଟ ଦିଶିଲା ପରି ହାରିଦ୍ର-ହଳଦିଆ ବର୍ଣ୍ଣ ସିନ୍ଦୁର-ସିନ୍ଦୁରବର୍ଣ୍ଣ ପକ୍ୱ ଫଳମାନ ସହକାର ବିଶେଷ ଶୋଭା ପାଉ ଅଛି । ବିବାହରେ ବେନି କୂଳର ଆନନ୍ଦ ଧ୍ୱନି ଅଖଣ୍ଡିତ ରୂପେ

ଜାତ ହେଉଥାଏ । ଏଠାରେ ଅକ୍ଷରେ କଣ୍ଟା ହୋଇ ନଥିବା ବେନ ବାଉଁଶର ଘର୍ଷଣରେ ଶବ୍ଦ ଜାତ ହେଉଅଛି । ବିବାହ, ବ୍ରାହ୍ମଣୀ କନ୍ୟାରେ ବନ୍ଧତା ହୋଇଥାଏ । ଏ ବ୍ରାହ୍ମଣ-ମଞ୍ଜିଷ୍ଠା ବୃକ୍ଷରେ ବନ୍ଧତା ହୋଇଅଛି ବିବାହରେ ସାର ଅନୁରାଗ ପ୍ରକାଶ ହେଉଥାଏ । ଏଠାରେ ମଧ୍ୟ ପ୍ରକାଶ ହେଉଅଛି ରଙ୍ଗାଜବା-ଚନ୍ଦ୍ରକାରିଣୀ ହିଙ୍ଗୁଳା କପର୍ଦ୍ଦୀ ଦେଖାଇଲା ପରି ପାଚକର ଫାଟି ପଡ଼ିଥିବା ଡାଳିମ୍ବର ବୀଜ ଦେଖା ଯାଉଅଛି । ଯେଉଁଠାରେ ଅନ୍ତଃପୁର ପ୍ରକାରେ ପ୍ରାକାର ବୃକ୍ଷ ମୂଳ ମନ୍ଦା ଠାରେ ସମ୍ଭବ ହେଉଅଛି । ଶେଫାଳିକା ସଖୀ ହେଲା । ସେ ବର ଓ କନ୍ୟା ଦୁଇଙ୍କର ସଂଯୋଗ ନିମନ୍ତେ ସନ୍ନିକଟ ପରାଗ ରୂପ କର୍ପୂର ପତନ ଦ୍ୱାରା ପୃଷ୍ଠରେ ଶଯ୍ୟା କରିଅଛି । ମଧୁ ଶଯ୍ୟା ବେଳେ ଫୁଲ ଶେଯ ସଜଡ଼ା ହୋଇଥାଏ । ମହାକବି ଉପେନ୍ଦ୍ର ପ୍ରକୃତିର ବିବାହ ବର୍ଣ୍ଣନା କରିଅଛନ୍ତି । ଏହା ଅତି ଆଶ୍ଚର୍ଯ୍ୟ ଅଟେ ।

ନଥିଲା ହୋଇ ପାଦପ ତହିଁ, ଆଉ ଚଉଦ ଭୁବନେ ନାହିଁ
ଚମତ୍ତ୍ୱ ଅଳାଇତ କାଳକାଳ ସଘନେ ସହିଁ ସେ
ବୈଦ୍ୟ ଭଜିବନ୍ତ ଔଷଧି ପନ୍ତ ପ୍ରଭାରେ ଅତି ଥିବ ସେ ପ୍ରତି
ରଜନୀ ଏଣୀ ଗୃନ୍ଦମା ସ୍ୱତି କାନ୍ତିକ ବନ୍ଧ ସେ
ଫଳେ ହେଠ କମାଳୀ କୁମ୍ଭୀ ଜମ୍ଭୀର ସେ
ଦିଶୁଛନ୍ତି ପ୍ରଣାମ କଲା ପ୍ରକାର ସେ
ବାର ମାସରେ, ବିକାଶ ଜାତି, ମାପ କଣ୍ଟକ
କୁସୁମବନ୍ତି, ହୃଦ ହରଷ, ଦେଖାଉଛନ୍ତି, କି ନିରନ୍ତର ସେ ।
ସଫଳ ତହିଁ ଗୁଆ ନାରଙ୍ଗ, ଶ୍ରୀଫଳ ଭୃଙ୍ଗ
ସମାଭୂଲଙ୍କ ଲଙ୍ଗଳୀ କରମଙ୍ଗାହିଁ ସଙ୍ଗ
ବିପୁଳ ଭାବ ସେ ।

ଶିଶୁ ଠାବରୁ ଜରଠ ପଣ, ସ୍ତନ ଶୋଭନ
ଧିବାରୁ ଧରି ନବପୁଲ୍ଲ ସ୍ତମ୍ଭ ଅଛି ଆଦରି
ପୁନ୍ନାଗ ଧବ ଯେ,

ଅଙ୍ଗବାସ ମାଧବୀ ସୁପରିମଳ ଯେ
ହୋଇ ପ୍ରସରୁ ଅଛି ମନ୍ଦ ଅନିଳ ଯେ,

ବରାହ ଧାତ୍ରୀ, ନବ ମାଳିକା ନୂତନ କର
କୀର କଳିକା, ଯଥା ବାଳିକା, ନଠି ମାଳିକା
ମହା ଉଜ୍ଜ୍ୱଳ ଯେ ।
କୁଞ୍ଜ କୁଟୀର, ମାନ ରୁଚିର, ଯୁଥିକା ମୋଡ଼ି, ବିତାନ ଚୀର,
ଫଟନ ପୁଷ୍ପ, ଶଯ୍ୟା ପ୍ରକାର,
ଶେଫାଳିକାର ଯେ ।
ଭ୍ରମନ୍ତି ଭ୍ରମ, ସାରି କପୋତ, ସୁମନ ରତି
ରସରେ ମତ୍ତ, ପାନ ଖଦିର ଲବଙ୍ଗ ସ୍ଥିତ,
କି ମନୋହର ଯେ ।

ପକ୍ଷୀ ବନ୍ଦୀନେ ଶିକ୍ଷା କନ୍ଦର୍ପ କେଳି ଯେ
ପର ବସନ୍ତ ପାରାବତ ହ୍ରୀଁ ଖେଳି ଯେ

ପକ୍ୱଣ ବାସ ଅଶୋକ ଡାଳି ସ୍ତବକ ରବି କେଶ୍ୟାନ୍ତରେ ଝୁଲି
ଭ୍ରମକରଣ ଶଶୀ ହରଣ ସମ୍ବର ମିଳି ଯେ । ଲ. ବ.

ଲାବଣ୍ୟବତୀ କାବ୍ୟର-ନାୟକ-ଚନ୍ଦ୍ରଭାନୁ ସଖାମାନଙ୍କ ସହିତ ଗଲା ବେଳେ ଗୋଟିଏ ବନରେ ରହିଲେ । ସକାଳ ହେବାରୁ ନିତ୍ୟକର୍ମ ଶେଷ କରି ଶିକାର କରିବା ଉଦ୍ଦେଶ୍ୟରେ ବନକୁ ଯାଇ ଶୋଭା ସନ୍ଦର୍ଶନ କଲେ । ସେଠାରେ ଏପରି ବହୁତ ବୃକ୍ଷମାନେ ଅଛନ୍ତି । ଯାହାକି ଚଉଦ ଭୁବନରେ ନଥିବ । ଚମସ ଅଳାଇଚ

କକ୍‌କୋଲ ଗଛ ବିଶେଷ ଦେଖାଗଲା । କମାଳୀ, କୁମ୍ଭୀ, କୁମ୍ଭୀର ଜାତି, ମାପ, କଣ୍ଟକ ବୃକ୍ଷମାନଙ୍କରେ ଫୁଲ ଫୁଟି ପ୍ରଣାମ କଲାପରି ଦିଶୁ ଅଛନ୍ତି । ବାର ମାସରେ ବିକାଶ ହେବା ପୁଷ୍ପ ମଧ୍ୟ ଏଠାରେ ଅଛି । ଗୁଆ, ନାରଙ୍ଗ, ଶ୍ରୀଫଳ-ବେଲ, ଟଭ, ନଡ଼ିଆ ବଗଦ ଦାଡ଼, ଝଆଳୀ, କନଅର, କରମଙ୍ଗା, ପୁନ୍ନାଗ, ମାଧବୀ ଗଛରେ ସୁନ୍ଦର ପୁଷ୍ପ ଫୁଟିଅଛି । ପବନ ଏହି ପୁଷ୍ପମାନଙ୍କରୁ ଗନ୍ଧ ହରଣ କରି ଗନ୍ଧବହ ନାମକୁ ସାର୍ଥ କରୁଅଛି । ଏହି ବନରେ କୁଞ୍ଜ କୁଟୀରମାନ ଦେଖାଯାଉ ଅଛନ୍ତି । ଯୁଈ ଫୁଲ ଫୁଟି ମୁକ୍ତାପରି ଦିଶୁଅଛି । ଗଙ୍ଗଶିଉଳି ଗଛରୁ ଫୁଲ ପଡି, ଫୁଲ ଶଯ୍ୟା ପରି ଶୋଭା ଦିଶେ । ବନରେ ସାରୀ, ଶୁକ, କପୋତ ଆନନ୍ଦରେ ରତି ରସରେ ମାତି ରହି ଅଛନ୍ତି । ପାନ, ଖଦିର, ଗଛ କ ସୁନ୍ଦର ଦେଖାଯାଉ ଅଛି । ଯଥା ବିଦ୍ୱାନରେ-ଶିକ୍ଷା-କଲାପରି ଦେଖାଯାଏ । କନ୍ଦର୍ପର କେଳି ବିରାଜମାନ ହେଲେ, ଶିକ୍ଷା ଆବଶ୍ୟକ ହୋଇ ନଥାଏ । ପାରାବତମାନେ ସେଠାରେ ବସିବା ଦେଖାଯାଏ । ଶବର ଘର ଅଶୋକ ତାଳମ୍ବ କଡ଼ୀ ଗୁଡ଼ିକ, ରବି କିରଣରେ ଅତି ତେଜ ଦେଖାଯାଏ । ଏସବୁ ଦୃଶ୍ୟ ସହିତ ଶଶା, ହରିଣ, ଶମ୍ବର ମଧ୍ୟ ଦିଶନ୍ତି । କବି ନିଜେ ରାଜପୁତ୍ର ହେବାରୁ ଏହି ବର୍ଣ୍ଣନାଗୁଡ଼ିକ ପ୍ରାଣବନ୍ତ ହେବା ସ୍ୱାଭାବିକ । ଗୁମୁସର ଜଙ୍ଗଲମାନଙ୍କରେ, ଲିଖିତ ଗଛ ସମସ୍ତ ଆଜି ସୁଦ୍ଧା ଦେଖାଯାଏ ।

ଦଣ୍ଡକ ବନ ଅନ୍ତର ସହଜ ଉଭୟ
ଏକ ସରି ଦରଶନ ଏ ଭ୍ରମ ଜଦୟ
ମହ ଉଜ୍ଜ୍ୱଳ ତରଙ୍ଗ କଚ ଚକ୍ର ସ୍ତନ
ପଙ୍କଜ ବଦନ ଝଷ ଚହଟ ନୟନ
ଭ୍ରମର ଅଳକ ପଦ୍ମ ପତର ଉଦର

ଜଳ ଭ୍ରମ ତଦଧ ଅବଟ ରମ୍ୟତର
ରଜତ ଉତ୍ପଳ ରଙ୍ଗ ପଦ ତଳ କର
କମଳ ରଥ ଗମନ ଘନ ରସ ଭର
ଚରଣ କଟକର ଶବଦ ରଣ ରଣ
ଲକ୍ଷ୍ୟ ଧବଳ ପତର ଶବଦ ଶ୍ରବଣ
ଏତ ଧନ ଏମନ ଗମନ ତତପର
ସକଣ୍ଟକ ଅପଘନ ଦମ ଦମ ଜର
କର ଊର୍ଦ୍ଧ୍ୱ କର ଖର ଧରଣ ଉଚ୍ଛନ୍ନ
ମରକତ ବରନ ରଚନ ଜଚ ସ୍ୱନ । ଅ· ର·

ପୁରୁଷୋତ୍ତମ ରାମଚନ୍ଦ୍ର ଦଣ୍ଡକ ବନରେ ଥିବା ବେଳେ ଲଙ୍କାଧିପତି ରାବଣ ସତୀ ଶିରୋମଣି ସୀତାଙ୍କୁ ହରଣ କରି ନେଲା ପରେ ରାମ ଓ ଲକ୍ଷ୍ମଣ ଦୁଇ ଜଣ ଦଣ୍ଡକ ବନ ତ୍ୟାଗ କରି ଭ୍ରମଣ କରୁଥିବା ବେଳେ ଏକ ସରୋବର ଦେଖିଲେ । ସେହି ସରୋବରରେ ତରଙ୍ଗ ଗୁଡ଼ିକ ଅତି ଉଜ୍ଜ୍ୱଳ ଦେଖାଯାଉ ଅଛି । ଚକ୍ରବାକ ପକ୍ଷୀ ଖେଳୁଛନ୍ତି । ପଙ୍କଜ ଫୁଟିଅଛି ମୀନମାନେ କ୍ରୀଡ଼ା କରନ୍ତି । ଭ୍ରମର ମାନେ ଭ୍ରମଣ କରୁଛନ୍ତି । ପଦ୍ମ ପତ୍ର ଅଛି । ଜଳ ଗଭୀର ଅଛି । ରକ୍ତ ପଦ୍ମ ଫୁଟିଛି । ହଂସ ଗମନ କରନ୍ତି । ଜଳ ବେଶି ଅଛି । ହଂସ ଗମନ କଲାବେଳେ ରଣ ରଣ ଶବ୍ଦ ଶୁଭେ । ଏସବୁ ପ୍ରକୃତି ଗୁଡ଼ିକ ସୀତାଙ୍କର ଅଙ୍ଗ ପ୍ରତ୍ୟଙ୍ଗର ବର୍ଣ୍ଣନା କରାଯାଇ ଅଛି । ପ୍ରକୃତି ରୂପିଣୀ ସୀତାଙ୍କର ଅବୟବ ସହିତ ସରୋବରର ଶୋଭା ସମ୍ପଦ ସମାନ ହେତୁ ରାମଚନ୍ଦ୍ର ଏହି ସରୋବର ରୂପିଣୀ ସୀତାଙ୍କୁ ଦେଖି ହସ୍ତ ଉଠାଇ ଧରିବାକୁ ଧାଇଁଲେ । ଏବଂ କହିଲେ, ଏଠାରେ ମୋର ସୀତା ଅଛି ।

ମନଦେଇ ଶୁଣ କୋବିଦେ ନୃପ ସୁତା ସୁକେଶୀ
କୂଳରେ ବକୁଳ ମୂଳରେ ପୀଠ ଉପରେ ବସି
ସରସୀ ଶୋଭିତ ଅନାଇଁ ମନ ନେତ୍ର ଲୋଭିତ
ତଟ ଘଟଣ ବଦ୍ରୁମରେ ପକ୍ଷୀ ପନ୍ତ ବନ୍ଦିତ
କ ନୀଳ ଶାଢ଼ୀ ହଂସାବଳୀ ରଙ୍ଗ ଧଡ଼ି ହୋଇଛି
ଅବନୀ ବନିତା ବସ୍ତ୍ରାରେ କବା କହିବା ଇଚ୍ଛି
ପାବନ୍ତ ସ୍ୱଚ୍ଛ ସ୍ଫଟିକରେ ନୀର ଷୀର ପ୍ରଶାତ
ସୁରବେଣୀ ପରଶ ଭାବ କ ତହିଁ ତ୍ରିବେଣୀ ଖ୍ୟାତ
ଧାପ ଦଣ୍ଡୀ ଲଭି ମରାଳ ପନ୍ତ ହଏ ଭଉଁର
ବଢ଼ ବଢ଼ଉଖ୍ୟକ ବେଢ଼ିକି ଶୋଭାନ୍ତ୍ରି ଚଉଁରୀ
ଜଳ ଜମ୍ବାଳ ଆବଳରେ ଜନ ମନ ହରୁଛି
ଜଳ ନିର୍ମଳରେ ଆଦର ଆଦରଶୁଁ ସାରୁଛି
ଗମ୍ଭୀର ଗୁଣକୁ ପଣ୍ଡିତ ଠାରୁ ଗୃହୀତ କରି
ନର୍ତ୍ତକୀ ଠାବରୁ ଭଉଁରି ଶିକ୍ଷା ପରା ଏହାରି
ଅମୃତ ସଙ୍ଗତେ ହୋଇଛି ମିତ ମଧୁର ଗୁଣେ
ବଧୂର ସ୍ନେହକୁ ବଧୂରୁ କରେ ଶୀତଳପଣେ
କାମ ସରଲୀରେ ପ୍ରକାଶ ମାନ ସୁଖ ଦାନରେ
କୁମୁଦରେ ଯେଣୁ ହ୍ୱଦତ ତେଣୁ ହରି ପ୍ରକାରେ । ଲ. ବ.

ଲାବଣ୍ୟବତୀ ସ୍ନାନ କରିବାକୁ ଯାଇ ବକୁଳ ମୂଳରେ ଥିବା ପୀଠ ଉପରେ ବସି ସରୋବରର ଶୋଭା ଦର୍ଶନ କରିବାରୁ ମନ ଓ ନେତ୍ର ଲୋଭ ହେଲା । ସରୋବର ତଟରେ ବଦ୍ରୁମ ଥିଲା ପରି ପକ୍ଷୀ ମାନେ ପ୍ରତିବନ୍ଦିତ ହେଉଥିଲେ । ସରୋବର କୂଳରେ ବା ସରୋବରରେ ହଂସ ସମୂହ ଥିବାରୁ ଜଣାଯାଉଥିଲା ନୀଳ ଶାଢ଼ୀରେ ହଂସାବଳୀ ରଙ୍ଗ ଧଡ଼ି ଥିବା ପରି ଜଣାଗଲା । ପୃଥ୍ୱୀରୂପକ ସ୍ତ୍ରୀ ଏହା

ଜାଣିବାକୁ ଇଚ୍ଛା କରି ଅଛନ୍ତି କି ? ସରୋବରରେ ପାହାଚ ଗୁଡ଼ିକ ସ୍ଫଟିକ ପରିପ୍ରେ ଦେଖାଯାଏ । ଲାବଣ୍ୟବତୀ ବେଣୀ ପକାଇ ଥିବାରୁ ଗଙ୍ଗା ଯମୁନା ସରସ୍ୱତୀ ମିଶିବା ପରି ହୋଇ ସୁନ୍ଦର ଦିଶୁଛି । ଯାପଦଣ୍ଡୀକୁ ଲଭି ମରାଳ ପନ୍ତି ଉଡ଼ି ଭଉଁରି ଦିଅନ୍ତି । ଅତି ବଡ଼ କୋଠା ଘରରେ ଚନ୍ଦ୍ର ଲାପିବା ପରି ଦିଶେ । ଜଳ ପଙ୍କ ଆବିଳରେ ମନ ହରଣ କରୁଅଛି । ଜଳ ଏପରି ନିର୍ମଳ ହୋଇ ଅଛି ଯେ ଦର୍ପଣ ଠାରୁ ଅଧିକ ଦିଶଇ ।

ପଣ୍ଡିତମାନେ, ଗମ୍ଭୀର ଗୁଣ ଗ୍ରହଣ କରିଥାନ୍ତି । ପଣ୍ଡିତ ମାନଙ୍କଠାରୁ ଗମ୍ଭୀର ଗୁଣ ଗ୍ରହଣ କରି ସରୋବର ଅତି ଗମ୍ଭୀର ହୋଇ ରହିଛି । ନର୍ତ୍ତକୀଠାରୁ ଭଉଁରି ଶିକ୍ଷା ଗ୍ରହଣ କରି ଅଛି । ନର୍ତ୍ତକୀମାନେ ଭଉଁରି ନୃତ୍ୟ କରନ୍ତି । ସରୋବରରେ ଭଉଁରି ହେଉଅଛି । ସରୋବରର ଜଳ ମଧୁର ଗୁଣରେ ଅମୃତ ସହିତ ମିତ ହୋଇଅଛି । ଜଳ ଏପରି ଶୀତଳ ହୋଇଅଛି ଯେ ଚନ୍ଦ୍ର କିରଣ ଠାରୁ ଅତି ଶୀତଳ ଅଟେ । କାମ ସୁଖ ଦାନରେ ପକ୍ଷୀଗଣ ପ୍ରକାଶ ମାନ ହୋଇ ଅଛନ୍ତି । ସରୋବରରେ କଇଁ ଫୁଲ ଫୁଟି ଥିବାରୁ ବସ୍ତୁ ଯେପରି ପୃଥ୍ୱୀକୁ ଆନନ୍ଦ ଦାନ କରନ୍ତି ସେପରି ରହିଅଛି । ଏହା ଦେଖି ଲାବଣ୍ୟବତୀ ସନ୍ତୋଷ ଲାଭ କରୁଥିବା ବେଳେ ସଖୀମାନେ କହୁ ଅଛନ୍ତି ।

ଦେଖରେ ନଳିନୀ ନଳିନୀ ନଳିନୀରେ ପୂରିତ
ଭ୍ରମନ୍ତି ଭ୍ରମରେ ଭ୍ରମରେ ଭ୍ରମରେ ଏ ଶୋଭିତ
ବରାଜ ବ-ରାଜ ଅଛନ୍ତି ମୀନ ଭକ୍ଷଣ ପାଇଁ
ରାଜିବ ରାଜିବ ନୟନା ଏଥି ଖେଳା କରଇ
ଅନ୍ଧ ମକର ଚାପ ନାଶେ ଶୋଭା ସାରସ ଚନ୍ଦେ
ଅନ୍ଧ ମକର ଚାପ ନାଶେ ଶୋଭା ସାରସ ଚନ୍ଦେ । ଲ. ବ.

ରେ ପଦ୍ମା ଜାଣ୍ଡସ୍ନା ସୁନ୍ଦରୀ ସ୍ତ୍ରୀ ଦେଖ, ସରୋବରରେ ଜଳ ଓ ପଦ୍ମ ପୂର୍ଣ୍ଣ ହୋଇଅଛି । ଭ୍ରମରମାନେ ଉର୍ଦ୍ଧ୍ୱର ହୋଇ ଭ୍ରମରେ ଭ୍ରମଣ କରନ୍ତି । ସରୋବର କୂଳରେ ପକ୍ଷୀମାନେ ମୀନ ଭକ୍ଷଣ କରିବା ଉଦ୍ଦେଶ୍ୟରେ ବସି ଅଛନ୍ତି । ରେ ରାଜୀବ ନୟନା ରାଜୀବ ଏଥି ଖେଳ କରୁଅଛି । ଏହି ସରୋବର ଜଳ ସର୍ପ ଓ ମତ୍ସ୍ୟର ଗ୍ରୀଷ୍ମ କାଳର ତାପକୁ ନାଶ କରି ପଦ୍ମଫୁଲରେ ଶୋଭା ପାଉଅଛି, ଏବଂ ଖରାର ତାପକୁ ନାଶ କରି ହଂସ ସମୂହରେ ଶୋଭା ପାଉ ଅଛି ।

ମଧ୍ୟେ ସରସୀ ନ କୂଳେ ରସାରସି
ରସିକ ରସିକା ଯେମନ୍ତ
ନୀଳୋତ୍ପଳଦଳ ଚଳ ଦୃଗଞ୍ଚଳ
ମୀନ ଚଞ୍ଚଳେ ଢାଳେ ନେତ୍ର ଆଚ୍ଛନ୍ନ
ସେ କାମ ଶରାଳୀ ବଣରେ
ତୂଳ ଶୈବାଳ ଚଳ ଅଳି ଆବଳୀ
ବେଣୀ ଚଳିତ କର୍ମଣିରେ
ତରଙ୍ଗ ଭର କର ଦେଇଁ ବଢ଼ାଇ
ନୀରବ କୋରକ ଉରଜେ
ହଂସ ଗତିରେ ଧ୍ୱଞ୍ଜୁନାଦ ହଂସକ
ଶବଦ ପ୍ରକଟ ସନ୍ଧେଜ ପ୍ରଚଳ
ଫେନ ବସନ ଆଢ଼ ଯେଣୁ
ଦର ବିକାଶ କୋକନଦ ମୁଖେ ଯେ
ଦୃଷ୍ଟ ଆରମ୍ଭି ଆଣୁ ଆଣୁ । କୋ॰ ବ୍ର॰ ସୁ॰

ରସିକ ଓ ରସିକା ନୂତନରେ ରସା ରସି ହେଲପର ବନ ମଧ୍ୟରେ ଥିବା ପୁଷ୍କରଣୀ ସେପରି ହୋଇଅଛି । ରସିକ ରସିକାଙ୍କର ଚଞ୍ଚଳ କଟାକ୍ଷ ପର ପୁଷ୍କରଣୀର କମ୍ପିତ ନୀଳୋତ୍ପଳ ଦଳ ହୋଇ ଅଛି । ତାଙ୍କର ଚଞ୍ଚଳ ଡ଼ାଳବା ନେତ୍ର ମୀନର ଶୋଭା ପାଉ ଅଛି । ସେ ଦୁହେଁ କାକ ଶବଳୀରେ ଆଚ୍ଛନ୍ନ ହୋଇଥାନ୍ତି । ଏ ପୁଷ୍କରଣୀ କାମ ପକ୍ଷୀ ହଂସବଳୀରେ ଆଚ୍ଛନ୍ନ ହୋଇଅଛି । ଠୁଳ ହୋଇଥିବା ଶୈବାଳ ଚୂଳ ପାଣିକ ଲାଗି ଉଡୁଥିବା ଭ୍ରମର ଶ୍ରେଣୀ କମ୍ପିତ ଶିରରେ ଚଳନ୍ତ ବେଣୀ ପରି ଶୋଭା ପାଏ । ଚନ୍ଦ୍ର କଳିକା ରୂପକ ଉରଜକୁ ପୁରୁଷ ତରଙ୍ଗ ତର ରୂପ କରକୁ ବଢ଼ାଇବାରୁ ସେ ରସିକା ହଂସ ଗତିରେ ଧୂଅଁ ଯିବାରୁ ନୂପୁର ଶବ୍ଦ ସହଜରେ ପ୍ରକଟିତ ହୁଅଇ । ତେଣୁ ଦର ବିକାଶ କୋକନଦ ରୂପ ମୁଖରେ ଧୃଷ୍ଟ ଆରମ୍ଭି ଆଣୁ ଆଣୁ ପ୍ରଚଳିତ ଫେନ ରୂପ ବସନକୁ ଆଡ଼ କରେ ।

## ନଦୀ ବର୍ଣ୍ଣନା

କର ଯାଉଅଛି ସେ ନାଗର ଏହି ସ୍ତବ
ହେ ବାଳେ ନର୍ମଦା ସୁରତ ରଙ୍ଗିଣୀ ଭବ ଯେ
କାଳନ୍ଦୀ ରୁଚିର କୃଷ୍ଣ ବେଣୀ ପୁଣି ଲକ୍ଷ
ଚନ୍ଦ୍ରଭାଗାଳକ ଶୋଭା ଚାନ୍ଦ ଉତ୍ପଳାକ୍ଷୀ ଯେ
ହୋଇଥିବ ଯୁକ୍ତ ରସ ସରସ୍ୱତୀ ସଦା
କର ପବିତ୍ର ହୋଇରେ ବାରେ ବାହୁଦା ଯେ,
ତୀର୍ଥମୟୀ କଳପନା! ମୋ ଆନ ନକର
ବୋଲି ଆଉ ଧୃଷ୍ଟ କହିବାକୁ ଯୋଡ଼ିଁ କର ଯେ ।

କୋ· ବ୍ର· ସୁ·

କୋଟୀ ବ୍ରହ୍ମାଣ୍ଡ ସୁନ୍ଦରୀ। ବନରେ ପୁଷ୍ପପୁର ରାଜ କୁମାର ପୁଷ୍ପକେତୁଙ୍କୁ ଦର୍ଶନ କରି ସୀରଲ୍ଲ ପରେ ଭାବନା କରୁଅଛି। କନ୍ଦର୍ପ ସିନା ଥିଲ ଏଠାରେ ଏହି ରାଜକୁମାର କନ୍ଦର୍ପର ଦର୍ପ ଦଳନ କରୁ ଅଛନ୍ତି। ଏପରି ଭାବନା କଲା ବେଳେ ରାଜକୁମାର ନିକଟକୁ ଆସି ଏପରି ସ୍ତବ କଲା। ହେ ବାଳେ, ମନରେ ଭାବ, ତୁ ନର୍ମଦା ଅଟୁ। ଅର୍ଥାତ୍ ସୁଖ ଦାୟିନି, ନର୍ମଦାର ଜଳ ଅତି ସ୍ୱଚ୍ଛ ଦେହକୁ ଅବଗାହନ ବେଳେ ଅତି ସୁଖ ଲାଗେ। ତୁ ସୁର ତରଙ୍ଗିଣୀ ଅଟୁ ଅର୍ଥାତ୍ ସୁରତ ପ୍ରବୀଣା (ସ୍ୱର୍ଗ ଦର୍ଶନରେ କାମ ବିକାର ଜାତ ହୁଏ) ଏଣୁ ତୁ ସ୍ୱର୍ଗଙ୍ଗା ଅଟୁ। ପୁଣି ତୋଠାରେ କାଳନ୍ଦୀ ପରି ସୁନ୍ଦର କୃଷ୍ଣବର୍ଣ୍ଣ ବେଣୀ ଲକ୍ଷିତ ହୋଇଛି। ଅତଏବ ତୁ କାଳନ୍ଦୀ-ଯମୁନା ଅଟୁ। ଯମୁନାର ଜଳ ଅତି କଳା ଦେଖାଯାଏ। ବେଣୀ ଅତି କୃଷ୍ଣ ହୋଇ ଥିବାରୁ କୃଷ୍ଣ ବେଣୀ ଅଟୁ। ପୁଣି ଚନ୍ଦ୍ର ଭାଗାଳକ ଶୋଭା-ଅର୍ଦ୍ଧଚନ୍ଦ୍ର ସଦୃଶ ଭାଲପଟରେ ଶୋଭାବାନ୍। ସୁତରାଂ ଚନ୍ଦ୍ରଭାଗା ତୁଲ୍ୟ ଅଟୁ। ତୁ ଚିତ୍ର ଉତ୍ପଳାକ୍ଷୀ-ଆଶ୍ଚର୍ଯ୍ୟ ପଦ୍ମାକ୍ଷୀ। ସୁତରାଂ ତୁ ଚିତ୍ରଉତ୍ପଳା ଅଟୁ। ତୋର ବାଣୀ ସଦା ରସ ଯୁକ୍ତ ହୋଇଥିବ। ସୁତରାଂ ରସ ଯୁକ୍ତ ସରସ୍ୱତୀ ନଦୀ, ରେ ସୁନ୍ଦରୀ ବାରେ, ବାହୁଦା ହୋଇ-ଆଲିଙ୍ଗନ କରି, ପବିତ୍ରକର। ସୁତରାଂ ତୁ ରେବା ଓ ବାହୁଦା ନଦୀ ଅଟୁ। ମୋର ଯଥାର୍ଥମୟ କଳ୍ପନାକୁ ଅନ୍ୟଥା କରି ନାହିଁ।

ଗଙ୍ଗାନଦୀ ବର୍ଣ୍ଣନା

ବିତଳକୁ ଆଲିଙ୍ଗନ　　କରି ଜାହ୍ନବୀ ଶୋଭନ
ହରେ ସୁର ବର ତାପ ସ୍ୱର୍ଗଧାରି ସେ
ବହେ ମକର କେତନ　　ଉଜ୍ଜ୍ୱଳ ରତ୍ନ ସମାନ
ପୂରିତ ହୋଇଛି ସେହୁ ଅଶେଷ ରସେ
ବିଦ୍ୟ ହୈମବତୀ ପଦରେ

ବିଷକଣ୍ଠ ତୋଷ ଦାଣ୍ଡ ବେଦ ମତରେ
ବିଷ୍ଣୁପଦୀ ବିଷ୍ଣୁପଦ ଇକାର ଭେଦ ଶବଦ
ତରଣୀର ଗତାଗତ ତହିଁ-ଉଚିତ ।

ସପ୍ତ ପାତାଳ ମଧ୍ୟରୁ ତୃତୀୟ ପାତାଳକୁ ଭେଦ ଜାହ୍ନବୀ ଅତି ଶୋଭାରେ ବହି ଯାଉଅଛି ଏବଂ ସୁରବର-ସୂର୍ଯ୍ୟ ତାପକୁ ହରଣ କରୁଅଛି । ସେହି ଗଙ୍ଗା ବହିଲା ବେଳେ କନ୍ଦର୍ପ ବହିଲା ପରି ଜଣାଯାଏ, ଏବଂ ତାହାର ଗତି ରତି ସମାନ ଅଟେ । ସେ ଗଙ୍ଗା ଅଶେଷ ରସରେ ପୂରିତ । ହୈମବତୀ ପଦରେ ବିଷକଣ୍ଠ ମହାଦେବ ବେଦ ମତରେ ତୋଷକାରୀ ହୁଅନ୍ତି । ଯଥା ପାର୍ବତୀ ଓ ଗଙ୍ଗାଙ୍କୁ ହୈମବତୀ କୁହାଯାଏ । ବିଷ୍ଣୁପଦରେ 'ଇ' କାର ଭେଦ ମାତ୍ର ଅର୍ଥ ଏକ । ବିଷ୍ଣୁପଦୀ-ଗଙ୍ଗା, ପୂର୍ବକାଳରେ ଭଗବାନ୍ ବାମନାବତାର ହୋଇ ଗୋଟିଏ ପାଦରେ ଆକାଶ ଆଉ ଏକ ପାଦରେ ମର୍ତ୍ତ୍ୟ ଆଉ ଏକ ପାଦରେ ବଳୀକୁ ପାତାଳକୁ ନେଇଥିଲେ । ଆକାଶରେ ଥିବା ପାଦରେ ବ୍ରହ୍ମା ଗଙ୍ଗାଜଳରେ ଅଭିଷେକ କରିବାରୁ ଗଙ୍ଗାଙ୍କର ସମସ୍ତ ଜଳ ବିଷ୍ଣୁଙ୍କ ନଖ କୋଣରେ ରହିଗଲା । ସଗର ବଂଶ କପିଳ ମୁନିଙ୍କ ଶାପରେ ଦଗ୍ଧ ହୋଇଥିବା ଭଗୀରଥ ଜାଣି ତପସ୍ୟା ଦ୍ୱାରା ମର୍ତ୍ତ୍ୟକୁ ଗଙ୍ଗା ଆଣିଥିଲେ । ସେତେବେଳେ ସେହି ଗଙ୍ଗା ବିଷ୍ଣୁପଦରୁ ଆସିଥିଲେ । ଏଣୁ ଗଙ୍ଗାଙ୍କୁ ବିଷ୍ଣୁପଦୀ କୁହାଯାଏ । ଏହି ଛାନ୍ଦରେ ପୁଣି କୁହାଯାଇଛି

ବିଶ୍ୱାମିତ୍ରଙ୍କୁ ଶ୍ରୀରାମ ପଚାରିଲେ ଗଙ୍ଗାନାମ
ଭଗୀରଥି କମ୍ପା ହେଲ କହ ଗୋସାଇଁ
ବିଷ୍ଣୁନଖ କୋଣେ ଏ ଥିଲା
ବାମନାବତାରେ ଭଗୀରଥ ଆଣିଲା ।

## ସମୁଦ୍ର ବର୍ଣ୍ଣନା

ବାଢ଼ଏ ଏମନ୍ତ                ବୃଦ୍ଧି ପ୍ରକଟିତ
ସ୍ୟନ୍ଦନ କୁମ୍ଭୀ ତୁରଙ୍ଗେ
ବହୁତ କୁମ୍ଭୀର                ମହା ମୀନ ମାନ
ଗତିକରନ୍ତି କ ରଙ୍ଗେ ସେ

ବାଜୀ

ବାର ସାଦ୍ଧ ସଦୃଶ୍ୟ ବଳକ
ବାସ ଉଷ୍ଣୀଷ ହିଣ୍ଡୀର ସଜ
ବାରି ବ୍ୟାଳ ଜାଳ                କଚ୍ଛପ ମଞ୍ଜୁଳ
ସାବେଳୀ ଅଂଡ଼ଣୀ ବହୁ
ବ୍ୟୂହପତି ହୁଏ                ଭ୍ରମ ଚନ୍ଦ୍ରାକୃତ
ପୁଚ୍ଛନ୍ତି ଶ୍ରୀରାମ ଗୁହିଁଏ

ବ୍ୟୂହ

ବିଧାନରେ ଶ୍ରେଷ୍ଠ କେ କେ କହ
ବିରାଜନ୍ତି ଯଥା ମହାଗ୍ରହ । ବୈ. ହ.

ରାମ ଓ ରାବଣ ଯୁଦ୍ଧରେ ରାବଣର ଚତୁରଙ୍ଗ ବଳକୁ ଦେଖି ସମୁଦ୍ର ବୋଲି ମନେ ହୁଏ । କାରଣ, ସମୁଦ୍ରରେ ବୋଇତ କୁମ୍ଭୀର ଓ ବଡ଼ ବଡ଼ ମାଛ ପ୍ରଭୃତି ଜଳଚର ଜୀବ ସବୁ ଗତି କଲା ପରି ସେହି ସମୁଦ୍ର ରୂପ ସୈନ୍ୟ ମଧ୍ୟରେ ରଥ ହସ୍ତୀ ଓ ଅଶ୍ୱ ଅବଲୀଳା କ୍ରମେ ଗତି କରୁଅଛନ୍ତି । ପୁଣି ସମୁଦ୍ରରେ ପକ୍ଷୀମାନେ ଶୋଭା ପାଇଲା ପରି ଏଥିରେ ଅଶ୍ୱାରୋହୀମାନେ ଶୋଭା ପାଉଅଛନ୍ତି । ଆହୁରି ସୈନ୍ୟରେ ମଧ୍ୟ ଲୁଗା ଓ ପଗଡ଼ି ସମୁଦ୍ରର ଫେଣ

ଭୁଲ୍ୟ ଶୋଭା ପାଉଅଛି । ଜଳ ମଧ୍ୟରେ ଯେପରି ଧଣ୍ଡସାପ ଓ କଇଁଚ ମାନେ ମଣ୍ଡଳାକାର ଗତିରେ ଭ୍ରମଣ କଲା ବେଳେ ସୁନ୍ଦର ଦେଖା ଯାଏ । ସୈନ୍ୟମାନେ ଧାରଣ କରିଥିବା ସାବେଲୀ ଅସ୍ତ୍ରମାନ ଓ ଢ଼ାଲ ସମୂହ ସେହିପରି ମନୋହର ଦେଖାଯାଏ ।

## ପର୍ବତ ବର୍ଣ୍ଣନା

ସମ୍ମୁଖେ ନୟନେ ଆନନ୍ଦ ଗିରି ଶୋଭାକୁ ଗୃହିଁ
ସତିବାର ନୃପେ କଥନେ କହୁଛ କହିବ ନାହିଁ
ସତ ଅବନୀ ବନୀତାର ସ୍ତନ ଶୋଭା ପାଉଛି
ସୁତୁଙ୍ଗ କଠିନ ଦୁର୍ଲ୍ଲଭ ତନ ଗୁଣ ବହୁଛି
ସନ୍ତତ ସନ୍ତତ ମର୍କତ ମଣି ପ୍ରକାଶେ ଶୋଭା
ସତ୍ତ ହସ୍ତ ହସ୍ତ କୋମଳ ଦୁର୍ବା ବଢ଼ିଛି ଲୋଭା
ଶ୍ରମକୁ ହରନ୍ତି ବିଶ୍ରାମ କରି ଲବ ମାତର
ସୁର ସୁତ ସେହି ଠାବରେ କରେ ମାଦ ପ୍ରହାର
ସୁଧାପ୍ତି ହୀରାର ବାହୁଡେ ବାଜ ବ୍ରହ୍ମାଣ୍ଡ ଖଣ୍ଡ
ସୁରଖି ବହ୍ନାର୍ଷୀର ଧାର୍ମଣି ବସ୍ତ୍ରାଦିରେ ଭୁଣ୍ଡ
ସ୍ୱଚ୍ଛ କେଉଁ ଶୃଙ୍ଗେ ପ୍ରକାଶ ମାନ ମାଣିକ୍ୟ ଜ୍ୟୋତି
ଶୁଣ୍ଡ ଉପରକୁ ତୋଳନ୍ତି କ ସେ ଲୋହିତ ଦନ୍ତୀ
ସୁର ଶାସ୍ତ୍ରହିଁ ମୂର୍ତ୍ତିମନ୍ତ ମଣି ଗହ୍ୱରେ ରହିଁ
ଶୂନ୍ୟ ବିବେକ ଶବଶ୍ରି କ ବିପରୀତ କରାଇ
ଶବର ଶବରୀମାନେ ଯେ ବଳସନ୍ତ ସାନୁରେ
ସୁଧାକର ଅତି ସମୀପେ ରହି ଧାପ ଭାବରେ
ଶ.ବକେ ଛାଙ୍କର ରହିରେ ଖେଳା କଉତୁକରେ
ଶଶାଙ୍କ ଅଙ୍କ ହରଣକୁ ଅ.ଉଁସନ୍ତ ସ୍ୱକରେ



ସିନ୍ଧୁ ବିଦାରଣ ବାରଣ ମୋତି ପତନ ତହିଁ
ସାଉଁଟିଲ ପକ୍ଷ ବିଦକ୍ଷ ସଙ୍ଗେ ବିକାନ୍ତ ନେଇ
ସଂଗ୍ରାମରେ କରି କଣ୍ଠର ଦନ୍ତୁର ଶୁଣ୍ଡ ପତନ
ସଉଗନ୍ଧ ବିଭୂତି ଭ୍ରମରେ ତା ହସ୍ତ ଅନ୍ତ ଲେପନ
ସମନ୍ତ ସମସ୍ତ କାଳରେ ଶିଖୀ ତମାଳ ଗୃହିଁ
ସ୍ୱବିଳେ ଚକୋର ନୟନ ଚନ୍ଦ ବିଚ୍ଛେଦ ହୋଇ
ସ୍ଫଟିକ ଶିଳାରେ ଚତୁରସ୍ଥ କପି ବିମ୍ବ ଅନାଇ
ଶ୍ୱାପଦେ ଅନେକେ ଲୋଭରେ ମାଡ଼ି ବସନ୍ତି ଡେଇଁ
ସ୍ୱଚ୍ଛ ପାତ ହୋଇ ପ୍ରପାତୁ ବହେ ନିର୍ଝର ମାନ
ସ୍ୱର୍ଗଙ୍ଗା ଭେଜି ଦେବତାଏ ଆସି କରନ୍ତି ସ୍ନାନ । ସୁ. ପ.

ଦ୍ୱାରକା ନିକଟସ୍ଥ ରୈବତ ପର୍ବତରେ ଭଗବାନ୍ ଶ୍ରୀକୃଷ୍ଣ ଓ ବଳରାମ ଯଜ୍ଞ କରିବା ଉଦ୍ଦେଶ୍ୟରେ ପ୍ରବେଶ ହେଲେ । ସେହି ପର୍ବତର-ଶୋଭାକୁ କବି ବର୍ଣ୍ଣନା କରି ଯାଇ ଅଛନ୍ତି । ରୈବତ ପର୍ବତର ଶୋଭାକୁ ଦେଖି ସମସ୍ତ ଲୋକ ଆଶ୍ଚର୍ଯ୍ୟ ହେଲେ ଯେ ତାହା କହିଲେ ସରିବ ନାହିଁ । ମାତ୍ର ସେଥିରୁ କିଛି କହିବା ପାଇଁ ଉପେନ୍ଦ୍ର ଭଞ୍ଜ କହୁ ଅଛନ୍ତି ।

ସେ ରୈବତପର୍ବତ ଏପରି ସୁନ୍ଦର ଦିଶୁଛି ଯେ ପୃଥ୍ୱୀ ରୂପକ ନାରୀର ସ୍ତନ ତୁଲ୍ୟ ହୋଇଅଛି ଅତି ଉଚ୍ଚ କଠିନ ଓ ଅପୂର୍ବ ଏ ତିନି ଗୁଣକୁ ଧାରଣ କରିଅଛି । ମରକତ ମଣି ସ୍ୱରୂପ ସେ ସନ୍ତାନ ବର୍ଗଙ୍କୁ ଜାତ କରି ଥିବାରୁ କିମ୍ବା ସବୁବେଳେ ସେ ପର୍ବତ ମରକତ ମଣି ଯୁକ୍ତ ହେବାରୁ ଅତି ଶୋଭାମୟ ହୋଇଅଛି । ସୂର୍ଯ୍ୟଙ୍କର ଘୋଟକମାନେ ସେ ମର୍କତ-ମଣିକୁ-ଦୁବ ମନେକରି ଖାଇବା ନିମନ୍ତେ ଲୋଭଯୁକ୍ତ ହୋଇ ସେ ପର୍ବତ ଉପରକୁ ଆସନ୍ତି । ସେହି ପର୍ବତରେ ସୂର୍ଯ୍ୟଙ୍କର

ଘୋଟକମାନେ ଲବନୀର ବିଶ୍ରାମ କରି, ନିଜର ଶ୍ରମ ନାଶ କରନ୍ତି । ସେହି ସ୍ଥାନଟି ମନୋରମ ହୋଇ ଥିବାରୁ କନ୍ଦର୍ପ ସେଠାରେ ଶର ନିକ୍ଷେପ କରୁଥାଏ । ସେ ଶର ବ୍ରହ୍ମାଣ୍ଡ ଭିତରେ ବାଜି ଫେରିଆସେ । ସେଥିରୁ ଯେଉଁ ତେଜ ପ୍ରକାଶ ପାଏ, ତାହା ଶିବର ନେତ୍ରଜକୁ ନଷ୍ଟ କରିଦିଏ । ନନ୍ଦୀ ତାକୁ କ୍ଷୀର ଧାର ମନେକରି ପାନ କରିବା ଆଶାରେ ଭୁଣ୍ଡ ବିସ୍ତାର କରୁଥାଏ । ସେହି ପର୍ବତ ଶୃଙ୍ଗରେ କେଉଁଠାରେ ମାଣିକ୍ୟର ଜ୍ୟୋତି ପ୍ରକାଶ ହୋଇଅଛି । ଯେପରି କି ରକ୍ତ ବର୍ଣ୍ଣର ହାତୀ ତାହାର ଶୁଣ୍ଢକୁ ଊର୍ଦ୍ଧ୍ୱକୁ ଟେକିଛି । ସେହିପରି ଦିଶେ । ସେ ପର୍ବତ ଉପରେ ବହୁତ ମଣି ରହିଛି । ସେ ମଣିର ଗହ୍ୱରରେ କନ୍ଦର୍ପର ଶାସ୍ତ୍ରଗୁଡ଼ିକ ବା କନ୍ଦର୍ପର ବାସନାଗୁଡ଼ିକ ମୂର୍ତ୍ତିମନ୍ତ ହୋଇ ରହି ଅଛନ୍ତି କି ? ଜ୍ଞାନହୀନ ଶବରୀକି ସେଠାରେ ବିପରୀତ ବା ଓଲଟା କରି ପକାଏ । ସେହି ପର୍ବତରେ ଶବର ଶବରୁଣୀ ମାନେ ବିହାର କରନ୍ତି । ସେ ପର୍ବତ ବହୁତ ଉଚ୍ଚ ହୋଇ ଥିବାରୁ ଚନ୍ଦ୍ର ଆକାଶରେ ଥାଇ ମଧ୍ୟ ଅତି ନିକଟରେ ଥିବା ପରି ଦେଖାଯାଏ । ଶବର ଶବରୁଣୀଙ୍କର କ୍ରୀଡ଼ା ବେଳରେ ତାହା ଦୀପ ଜଳିଲା ପରି ଉପମା ଆସେ । ତାଙ୍କର ଶିଶୁ ମାନେ ରାତିରେ ଖେଳ ଖେଳିଲା ବେଳେ ଚନ୍ଦ୍ର ଅଙ୍ଗରେ ଥିବା ହରିଣକୁ ନିଜ ହାତରେ ଅଉଁସନ୍ତି । ସିଂହ ବିଦାରଣ କରିଥିବା ହାତୀର ମୁଣ୍ଡରୁ ସେଠାରେ ମୋତି ସବୁ ପଡ଼ିଥାଏ । ପାଚିଲା ବରକୋଳି ଗୋଟାଳିମାନେ, ଜାଣି-ନପାରି ତାକୁ ସଙ୍ଗରେ ଗୋଟାଇ ନେଇ ବିକନ୍ତି । ଦନ୍ତାହାତୀ ସଙ୍ଗରେ ଦନ୍ତାହାତୀ ଲଢ଼ି ଥିବାରୁ ତା ଦନ୍ତରୁ ଚୂର୍ଣ୍ଣ ସବୁ ପଡ଼ିଥାଏ । ଚନ୍ଦନ ବୋଲି ତାହାକୁ ନେଇ ଲୋକେ କୋଠାଘରେ ଲେପନ କରନ୍ତି, ଏବଂ ମୁନିମାନେ ଭସ୍ମ ମନେକରି ତାହାକୁ ଦେହରେ ବୋଳି ହୁଅନ୍ତି । ମୟୂର ମୟୂରୀ ଗଣ, ତମାଳ ଗଛକୁ ଦେଖି ମେଘ

ବୋଲି ମତ୍ତ ହୋଇ, ସର୍ବଦା ନୃତ୍ୟ କରନ୍ତି । ତମାଳ ଗଛକୁ ଦେଖି, ବର୍ଷି ହେଲା ବୋଲି ଭାବ ବିଚ୍ଛେଦ-ହୋଇ ଚକୋର ଚକୋରୀ ଆଖିରୁ ଲୁହ ଗଡ଼ାନ୍ତି । ସେ ପର୍ବତର ଗଛ ଉପରେ ବସିଥିବା ମାର୍କଡ଼ମାନଙ୍କ ରୂପ ସ୍ଫଟିକ ପଥରରେ ଦେଖାଯାଉ ଥିବାରୁ ଅନ୍ୟ ହିଂସ୍ର ଜନ୍ତୁମାନେ ତାଙ୍କୁ ଖାଇବା ପାଇଁ ସେ ଛବି ଉପରକୁ ଡେଇଁ ପଡ଼ନ୍ତି । ସେ ପର୍ବତର ଝରଣା ସ୍ଥାନରୁ ନିର୍ମଳ ହୋଇ ଜଳ ବହୁ ଥିବାରୁ ସ୍ୱର୍ଗ ମନ୍ଦାକିନୀକୁ ଛାଡ଼ି, ଦେବତାମାନେ ଆସି ସେଠାରେ ସ୍ନାନ କରନ୍ତି ।

## ନଗର ବର୍ଣ୍ଣନା

ସାବଧାନ ହୋଇ ଶୁଣ ସୁବୁଦ୍ଧି ଗଣ
ନଗର ବର୍ଣ୍ଣନା ମନକୁ ଆଣ
ଚମ୍ପା ସେ ରସା ଯୋଷା ଶିରେ ବନ୍ଧ
ଶିବ ତର୍ଦ୍ଧିରେ ଗୁରୁତର ସ୍ନେହ
ଜନ ମନୋହର ସୁବାସ ଅଛି
ଭ୍ରମର ଅବଲମ୍ବ ନାହିଁ କଛି
ଦେଖିବାରୁ ଯାହା ରୁଚିର ରୁଚି
ଶଙ୍କା କରି ଲଙ୍କା ଅଳକା କାଞ୍ଚି
ତରୁ ତରୁଣୀରେ ଶରଣ ଭଜି
କମ୍ପ ସ୍ତମ୍ଭ ଉକା ଚେତେ ନଚେଜି
ବଢ଼ାଖି ବଢ଼-ଖି ଜନମ କରେ
ହରିହସ୍ତ ହରିହସ୍ତ ଶତ୍ରୁରେ
ବଇଜୟନ୍ତକୁ ଜିଣିବ ବୋଲି
ବଇଜୟନ୍ତୀରେ ଛନ୍ଦ ନ ଭାଳି

ବିତାନ ଏସନ ପ୍ରସନ୍ନ ଧରେ
ଯେସନ ଗଗନ ନିଶାକାଳରେ
ଚନ୍ଦ୍ର ମଣ୍ଡଳ କରେ ପ୍ରକାଶିତ
ପୂର୍ଣ୍ଣିତାର ତାର ରାଜି ରାଜିତ
ଯେଉଁ ପୁରନ୍ଦରଙ୍କ ଅମରାବତୀ
ଉପରେ କରିଛି ଆକ୍ଷେପଅତି
କେତେତମ୍ବାଉରୁ ବସି ଅଛନ୍ତି
ଅଭିନବର ଗଡ଼ାଳଡ଼ ଦ୍ୟନ୍ତି
କେତେ ଚିତ୍ରରଥ ଗନ୍ଧର୍ବ ଚମୂ
ଅଳକେଧନେ ହେଉଛନ୍ତି ନମ୍ର
ମାଳପସରାଟି ସୁଧର୍ମା ସଭା
ସୁମନାବଳୀରେ ହୋଇଛି ଶୋଭା
ତହିଁ ଭୋଗବତୀ କେତେ ମାତର
କଥାକେକର ଦେଉଛି ଉତର
ଅନନ୍ତ ମଣିରେ ସେ ଜ୍ୟୋତି ନାହିଁ
ଅନନ୍ତ ମଣି କଣାବିକାଯହିଁ
କେଉଁ ପୁରେ ପଢ଼େ ଶୁକ-ବଯାକ
ଶୁକ ବିରଚିତ ଚରିତ ଶ୍ଳୋକ
ସୁକବିମାନେ ତା ଅର୍ଥକରିବା
ବିଚାର କରି କାହିଁକି ଯେଣିବା କୋ·ବ୍ର·ସୁ

କୋଟୀ ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ଚମ୍ପାନଗର ବର୍ଣ୍ଣନା କରି ଯାଇଅଛି । ହେ ସୁବୁଦ୍ଧିଗଣ ନଗର ବର୍ଣ୍ଣନା ଗ୍ରହଣ କର । ନଗରର ନାମ ଚମ୍ପାଅଟେ । ଚମ୍ପାଫୁଲକୁ ନାରୀମାନେ ମସ୍ତକରେ ଦେଇନ ଥାଆନ୍ତି । ମହାଦେବ ତହିଁରେ ବିଶେଷ ଶ୍ରଦ୍ଧାକରନ୍ତି । ତାହାର

ମନ ମୁଗ୍‌ଧକର ସୁଗନ୍ଧଥାଏ ଏବଂ ଭ୍ରମର ଚହିଁରେ ବସେ ନାହିଁ । ଏହି ଚମ୍ପାନାମ୍ନୀ ନଗରୀକୁ ପୃଥ୍ୱୀରୂପୀସ୍ତ୍ରୀ ମସ୍ତକରେ ଧାରଣ କରିଅଛି । ଶିବ-ମଙ୍ଗଳ ଦେବତା ଏଠାରେ ଅଛି । ଅର୍ଥାତ୍ ଏହି ନଗରୀରେ ଅମଙ୍ଗଳ ଶଙ୍କା ଆଦୌ ନାହିଁ । ଜନସାଧାରଣଙ୍କର ମନୋ ମୁଗ୍‌ଧକର ଉତ୍ତମ ଗୃହମାନ ଏଠାରେ ଅଛି । ଭ୍ରମ-ଭ୍ରାନ୍ତିର ଆଶଙ୍କା ନାହିଁ । ଏଠାରେ ବଗୁର କବି ଯାଇପାରେ ଉପେନ୍ଦ୍ର ଭଞ୍ଜଙ୍କର ସମୟରେ ଜନଗଣନା ଓ ଗୃହଗଣନା ଥିଲା । କାରଣ ବଡ଼ ନଗରୀରେ ଭ୍ରମ ନହେବାର କାରଣ ହେଉଛି ଘରର ନମ୍ବର ଅଛି । ସେତେବେଳେ ବା ତାପୂର୍ବରୁ ଏସବୁ ପ୍ରଣାଳୀ ଥିବା ଜଣା ଯାଏ । ଯାହାର ମନୋହର ସୌନ୍ଦର୍ଯ୍ୟ ଦେଖି ଲଙ୍କା ଅଳକା ଓ କାଞ୍ଚି ନଗରୀ ମାନେ ବୃକ୍ଷରେ ଏବଂ ସ୍ତ୍ରୀଠାରେ ଶରଣ ପଶି ସୁଦ୍ଧା କର୍ମ ବା ସ୍ତମ୍ଭୀଭୂତ ହେବା ଓ ଉଡ଼ା ପଳାଇବାକୁ ଗ୍ଲଡ଼ି ନାହାନ୍ତି । ଅର୍ଥାତ୍ ଲଙ୍କାନଗରୀ ଲଙ୍କା-ଡ଼ାଳ ରୂପରେ ବୃକ୍ଷକୁ ଆଶ୍ରୟ କରି ସୁଦ୍ଧା ଭୟରେ କମ୍ପୁ ଅଛି । ଅଳକା-ଚୂର୍ଣ୍ଣକୁନ୍ତଳ ନାରୀର ଆଶ୍ରୟ କରି ସୁଦ୍ଧା ଭୟରେ ସ୍ଥିର ହୋଇ ରହିଅଛି । କାଞ୍ଚିନଗରୀ ମଧ୍ୟ କାଞ୍ଚି ମେଖଳା, କଟୀ କିଙ୍କିଣୀ ରୂପେ ନାରୀକୁ ଆଶ୍ରୟ କରିମଧ୍ୟ ଉଡ଼ାପଳାଉ ଅଛି । ସେ ନଗରୀର ଅଟ୍ଟାଳିକା ଇନ୍ଦ୍ରପୁରୀକୁ ଜିଣିବ-ବୋଲି ଦେବରାଜ ଇନ୍ଦ୍ରଙ୍କ ମନରେ ଭୟର ସଞ୍ଚାର ହେଉଅଛି, ଏବଂ ନଗରୀରେ ଉଡ଼ୁଥିବା ପତାକା ଆମ୍ଭଙ୍କୁ ଛନ୍ଦ ପକାଇବ ବୋଲି ସୂର୍ଯ୍ୟଙ୍କର ଘୋଡ଼ାମାନେ ମନରେ ଭୟ କରନ୍ତି । ଅର୍ଥାତ୍ ଚମ୍ପା ନଗରୀରେ ଥିବା ଗୃହଗୁଡିକ ଆଧୁନିକ ଯୁଗରେ ବଡ଼ ବଡ଼ ସହର ମାନ-ଙ୍କରେ ତିଆରି ହୋଇ ଥିବା ବଡ଼ ବଡ଼ ଘରପରି ହୋଇଥିବା ଅନୁ-ମାନକରି ଯାଇପାରେ । ଯେପରି ରାତ୍ରି କାଳରେ ଆକାଶ ନିର୍ମଳ ସେହି ପରି ଗୃହୁଆ ନିର୍ମଳ ଆକାଶ ଚନ୍ଦ୍ର ମଣ୍ଡଳକୁ ପ୍ରକାଶ କରେ । ଏମଧ୍ୟ ମଧ୍ୟସ୍ଥିତ ସୁବର୍ଣ୍ଣ ଗୃହକୁ ପ୍ରକାଶ କରି ଅଛି । ଆକାଶ

ଉଜ୍ଜ୍ୱଳ ନକ୍ଷତ୍ର ମାଳାରେ ମଣ୍ଡିତ ଏହି ନଗରୀରେ ଥିବା ଗୃହଗୁଡ଼ିକ ଆ ଉଜ୍ଜ୍ୱଳ ମୁକ୍ତାମାନଙ୍କରେ ଖଚିତ । ଚମ୍ପାନଗରୀର ହାଟ ଅମରାବତୀ ଉପରେ ଅତ୍ୟନ୍ତ ହେୟ ଦୃଷ୍ଟି ପକାଉଛି । ଯେଣୁ ଅମରାବତୀରେ ରମ୍ଭା ଉର୍ବଶୀ ଅପ୍ସରା ଗୋଟିଏ ଗୋଟିଏ ଅଛନ୍ତି । କିନ୍ତୁ ଏହି ହାଟରେ ଅନେକ ରମ୍ଭୋରୁ ସ୍ତ୍ରୀମାନେ ବସିରହି ଅଛନ୍ତି, ଏବଂ ଐରାବତ-ନାରଙ୍ଗଫଳ ବହୁତ ଏଣେତେଣେ ଗଡ଼ୁଅଛି । ଇନ୍ଦ୍ରଙ୍କ ପୁରରେ ଶତରଥ ନାମକ ଗୋଟିଏ ମାତ୍ର ଗନ୍ଧର୍ବ ଅଛି । କିନ୍ତୁ ଏହାଟରେ ବହୁତ ରଥ ଘୋଡ଼ା ସବୁ ଅଳ୍ପମୂଲ୍ୟରେ କଣା ହେଉ ଅଛନ୍ତି । ଏଠାରେ ମାଲୁଣୀର ପସରା ସୁଧର୍ମାସଭା ହେଲା । ଯେପରି ସୁଧର୍ମା ସଭାକୁ ଦେବତାମାନେ ଶୋଭିତ କରିଥାନ୍ତି, ସେହିପରି-ମାଲୁଣୀ ପସରା ପୁଷ୍ପ ସମୂହଦ୍ୱାରା ଶୋଭିତ ହୋଇଅଛି । ସେଠାରେ ପାତାଳ ପୁରୀ ଅବା କେତେ ମାତ୍ର । ଏପୁରୀ ଗୋଟିଏ କଥାରେ ପାତା-ଳକୁ ତୁଚ୍ଛକରି ଦେଇଅଛି । ପାତାଳରେ ଶେଷଦେବଙ୍କର ମଣି ଗୋଟିଏ ଅଛି । ଚମ୍ପାନଗରୀରେ ଅସଂଖ୍ୟ ମଣି ବିକା କଣା ହେଉଅଛି । ସ୍ୱର୍ଗ ନଗରୀରେ ଶୁକ ଦେବଙ୍କ ବିରଚିତ ଶ୍ଳୋକ ପାଠହୁଏ । ଏଠାରେ ଶୁକମାନେ ସେହି ଶ୍ଳୋକ ପାଠ କରୁ ଅଛନ୍ତି । ସୁକବି ଶଙ୍କର ଅର୍ଥ ଉତ୍ତମ କବି ଓ ଶୁକପକ୍ଷୀ ।

ଗାର୍ଗବ ସୁଦେବ ବୋଲେ          ଗୋପନଗରକୁ ଗଲେ
ଦେଖନ୍ତି ସେପୁରୀ ଶିଳ୍ପପଟପୂରିତ
ଗନ୍ଧର୍ବ ଗାନେ ମଧୁର          ବହୁ ନେତ୍ର ସୁଖକର
ସୁମନସ ମୂରତିରେ ଶତ୍ରୁ ହରିତ
ଗୁରୁଜନ ସର୍ବ ପାଳିତ
ଗଣନ ହୁଅନ୍ତି ଏଣୁ ସ୍ୱର୍ଗ ସଙ୍ଗତ

ଗଉରୀ ମନ ମୋହିତ ଶିଖରେ ସଦା ହସିତ
ଭୂତଗଣ ମନୋହର କସେ କୈଳାସ
ଗାଢ଼େ ପ୍ରକାଶିତ ପ୍ରଭା ଅନନ୍ତ ମଣି ପ୍ରତିଭା
ପୁଣ୍ୟଜନ ନବାସୁଁ ପାତାଳ ସଦୃଶ
ଗିରିରାଜ ଉପମା ଲଭି
ଗଗନ ବ୍ୟାପ୍ତ ସଉଧ ସଦନ ଶୋଭି
ଗୁଣବନ୍ତ ହନୁମାନ କଲଠିଲଙ୍କା ଦହନ
ଏ ହଙ୍କାରେଣୁ ବ୍ରଜ ସମାନ ହେଉ
ଗଢ଼ିଲ ପୁଣି କର୍ମାଇଁ ବିଶ୍ୱକର୍ମା ବୁଧନୋତ୍ତମ
ଅଳକାର ଅଳଂକାର ନଗରୀ ଥାଉଁ
ଗୋପ ସମେ ପାଇଲେ ପୁର
ଗୃହୀ ହେବେ ଶୁଣାନେକ ଭ୍ରମନ୍ତି ହର
ଗୋକୁଳ ଭୁବନ ଯଶ ପଠଲ କରିବେ ହାସ
ଧବଳ ଦ୍ରବ୍ୟ ପ୍ରକାଶ ଏ ତ୍ରିଭୁବନ
ରଜ ଡରେ ପଳାଇଲା ଉବଜଠାରେ ଲୁଚିଲା
କଳା ପଡ଼ିଗଲା କଳାକର ବଦନ
ଗ୍ରାବ ଇତସ୍ତତରୁ ହୀର
ଗନ୍ଧହତ ହୋଇ ଚୂର୍ଣ୍ଣ ହେଲା କର୍ପୂର
ଗମ୍ଭୀର ଜଳରେ ରହି କୁମୁଦ ପଳାଇ ଯାଇ
ଦିବସେ ମୁଦ୍ରିତ ହୋଇ ଲଜ୍ଜା ଆକୁଳେ
ଗରୁଡ଼ ଚାପେ ଭାବ ଏକ ପଶୁଭରୀ ଦୁଇ ଲୋକ
ବଧୂ କଇରବ ବନ୍ଧୁ ପଣ କକଲେ
ଗୀତେ କେହ୍ନେ ସେ ବର୍ଣ୍ଣାଯିବ
ଗଣେଶକୁ ବାଞ୍ଛି ଯମ ଭୂତସେ ଦେବ

ଗୋଚର ନାହିଁ ଯହିଁରେ        ଚଉର ଶବ୍ଦ ଶ୍ରୁତରେ
ଗୋଚର ଅଛୁ ଚଉର ଶବ୍ଦ ଶ୍ରୁତରେ
ଗୋଟିଏ ବାଟପୀ ନାହିଁ        ବହୁ ବଟପୀରେ ଶୋହ୍ବ
ମଧୁପେ ହୀନ ମଧୁପ ଅଛୁ ଯହିଁରେ
ଗଣିକାରେ ଲମ୍ପଟ ନାହିଁ
ଗଣିକା ଶିର ମଣ୍ଡନ କରନ୍ତି ତହିଁ । ଘୁ. ଭୂ

ଯାଦବ ବଂଶରେ ଗୁରୁ ଗର୍ଗମହର୍ଷି ବସୁଦେବଙ୍କ ଅନୁରୋଧରେ ଗୋପନଗରକୁ ଯାଇ ଦେଖିଲେ । ସେ ଗୋପପୁରରେ ଭଗବାନ୍ ଶ୍ରୀକୃଷ୍ଣ ଥିବାରୁ ଅତି ଶୋଭା ଧାରଣ କରିଅଛୁ । ଆକାଶରେ ଗନ୍ଧର୍ବ ଗାନ କରନ୍ତି, ଏଠାରେ ଭ୍ରମରମାନେ ଗାନ କରନ୍ତି । ଗନ୍ଧର୍ବ ଗାନରେ ଇନ୍ଦ୍ର ଓ ଦେବତାମାନେ ଆନନ୍ଦ ହୁଅନ୍ତି । ଏଠାରେ ଭ୍ରମର ଗାନରେ ପୁଷ୍ପମାନେ ଆନନ୍ଦିତ ହୁଅନ୍ତି । ସ୍ୱର୍ଗରେ ଗୁରୁଜନ ସେବା କଲା ପରି ଏହି ରାଜ୍ୟରେ ଗୁରୁଜନମାନେ ପାଳିତ ହୁଅନ୍ତି । ଏଣୁ ଏହି ଗୋପପୁର ସ୍ୱର୍ଗ ସହିତ ସମାନ ଅଟେ । କୈଳାସ ପର୍ବତରେ ଶିବଙ୍କ ସହିତ ଥିବାରୁ ଗଉରୀଙ୍କର ମନ ମୋହିତ ହୁଏ, ଏବଂ ସର୍ବଦା କୈଳାସରେ ଭୂତଗଣ ଥାଆନ୍ତି । ଶିବଙ୍କ ଗଳାରେ ଅନନ୍ତଙ୍କ ପ୍ରଭା ପ୍ରକାଶ ହୋଇଥାଏ, ଏବଂ ବହୁ ତପସ୍ୱୀ ସେଠାରେ ଥାଆନ୍ତି । ଗୋପପୁରରେ ସର୍ବଦା ମଙ୍ଗଳ ବିରାଜିତ ହୋଇଥିବାରୁ ଗଉରବର୍ଣ୍ଣା ସ୍ତ୍ରୀମାନଙ୍କର ମନ ମୋହିତ ହେଉଅଛି, ଏବଂ ଭୂତଗଣ ବୃକ୍ଷଲତା ଏଠାରେ ଅଛନ୍ତି । ଶିବଙ୍କ ଗଳାରେ ଅନନ୍ତ ନାଗଙ୍କ ମଣିପ୍ରଭା ପ୍ରକାଶ ପାଏ । ଏଠାରେ ସ୍ତ୍ରୀ ମାନେ ଗଳାରେ ବହୁତ ମଣି ଅଳଙ୍କାର କରି ଲଗାଇଥାନ୍ତି । ପୂଣ୍ୟ ଜନ ନିବାସ କରିଥିବାରୁ ପାତାଳ ସଦୃଶ୍ୟ ହୋଇଅଛି । ଏଣୁ ହିମାଳୟ ଉପମା ଠିକ୍ ହେବ ।

ଏହି ଗୋପପୁରରେ ନଭଶ୍ଚୁମ୍ବୀ ଅଟ୍ଟାଳିକାମାନ ଅଛି । ଗୋପପୁର ସହିତ ଲଙ୍କା ସମାନ ନହେବାରୁ ରାମ ଭକ୍ତ ହନୁମାନ ଦହନ କରି-ଥିଲା କି ?

ବିଶ୍ୱକର୍ମା କିଛି ନଜାଣି କାହିଁକି ଏପରି ପୁର ରଚନା କରି-ଥିଲା । ଅଳକାର ଅଳଂକାର ହେଉଛି ବ୍ରଜପୁର । ଯଦି ଶିବ ଗୋପସମ ପୁର ପାଇଥାନ୍ତେ ତା ହେଲେ ଗୃହୀ ନହୋଇ ଶ୍ମଶାନରେ କାହିଁକି ରହନ୍ତେ । ଗୋକୁଳ ଭୁବନର ଯଶ ପଟଳ ଏପରି ଶୁଭ୍ର ହୋଇଛି ଯେ ତ୍ରିଭୁବନ ପ୍ରକାଶ ହୋଇଅଛି । ଏସବୁ ଦେଖି ହସ୍ତୀ ଯାଇ ଗଣେଶଙ୍କ ଠାରେ ଲୁଚିଲା । ବଳାକର-ଚନ୍ଦ୍ରବଦନ କଳା ପଡ଼ିଗଲା । ଏହି ଯଶ ସହିତ ହୀରା ସମାନ ନହୋଇ ଏଣେତେଣେ ପଡ଼ି ରହିଛି, ଏବଂ ଗର୍ବହତ ହୋଇ କର୍ପୂର ଚୂର୍ଣ୍ଣି ହେଲା । ଗୋକୁଳର ଯଶ ଦର୍ଶନରେ ଲଜ୍ଜାବହି କୁମୁଦ ଜଳରେ ବୁଡ଼ିରହିଲା । ଏବଂ ଦିବସରେ ମୁଦ୍ରିତ ହେଲା । ଚନ୍ଦ୍ର ଓ କୁମୁଦଙ୍କର ଗୁଢ଼ ତାପ ହେତୁ ପରାଭବୀ ହୋଇ ଦୁଇଜଣ ବନ୍ଧୁ ସୂତ୍ରରେ ଆବଦ୍ଧ ହେଲେ । ଗୋକୁଳର ଯଶ ଗୀତରେ ବର୍ଣ୍ଣାଯିବା ସମ୍ଭବ ନୁହେଁ । ସେ ବ୍ରଜପୁର ଏପରି ହୋଇଛି ଯେ ସେହିଠାରେ ଚୌର ଭୟ ଆଦୌ ନାହିଁ । ଶ୍ରୁତିରେ ଲେଖା ହୋଇଅଛି ସିନା କାନରେ ଶୁଣାଯାଉ ନାହିଁ । ଗୋଟିଏ ବିଟପୀ ସ୍ତ୍ରୀ ନାହିଁ ମାତ୍ର ବହୁ ବିଟପୀ ଗଛ ସେଠାରେ ଅଛି । ସେ ରାଜ୍ୟରେ ମଦୁଆ ଆଦୌ ନାହାନ୍ତି ମାତ୍ର ମଧୁପ-ଭ୍ରମର ଅଛନ୍ତି । ଲମ୍ପଟ ଅଛି ବୋଲି ଶୁଣିବାକୁ ମଧ୍ୟ ନାହିଁ । ସେ ଗୋପପୁରର ସ୍ତ୍ରୀମାନେ ସର୍ବଦା ଯୂଇ ଫୁଲ ବ୍ୟବହାର କରନ୍ତି ।

ଶୁଣହେ ସୁଜନେ ରସ କର୍ଣ୍ଣ ମନ ଲେଖ
ରତ୍ନାକର ମଧ୍ୟରେ ସିଂହଳ ଦ୍ୱୀପ ଶୋଭ ଯେ

କହିବାର ନୋହେ ସେ କଣ୍ଟକ ଛଟକକୁ
ରଚନ ଝଟକ ହସେ ଆନ କଣ୍ଟକକୁ ଯେ

ଅଛନ୍ତି ଧନଦ ସମ ଧନବନ୍ତ ମାନ
କର୍ଣ୍ଣେ ଶୁଣାଅଛି ସେମାନଙ୍କୁ ଏକାଦିନ ଯେ

ଯେତେ କୋଟି ସ୍ୱର୍ଣ୍ଣ ଯାହାକୁ ମିଳେ ତହିଁ
ତେତେ ଗୋଟି କଳଶ ସେମନ୍ଦିରେ ବସାଇ ଯେ

ଗୋରଚନା ପ୍ରକାରେ ଯହିଁରେ ମୃଗମଦ
ନଡକାର୍ଣ୍ଣ ବସନକୁ ବିକାନ୍ତି ପୁଳନ୍ଦ ଯେ

କୁଙ୍କୁମ ଉକୁଟାଇ ହୁଅନ୍ତି ନାସ୍ତି ଯହିଁ
ମନ୍ଦିରରେ ଆଦର କରିବେ କାହିଁ ତାଇଁ ଯେ

ମାର୍ଗ ମାର୍ଜନେ ରଜନୀକର ଆଣି ଯାଇ
ରଜନୀ କର ଆଣନ୍ତି ଶକଟରେ ବନ୍ଧି ଯେ

ହରିତକୀ ପାଇଁ ଉଆରିଲେ ନୈବେଦ୍ୟକୂଳ
ଘରବାଡ଼େ ଘରେରେ ଆଣନ୍ତି ଜାତିଫଳ ଯେ

ଶାବଣ୍ଡୀ ଶବଣ୍ଡୀ ଶେଷେଁ ଅରଣ୍ୟକୁ ଯାଇ
ହର ବିଦାରିତ କରି ନେଇ ଥୋଇଥାଇ ଯେ

ବଦରୀ ଆଦରି ନେଇ ସରୋବରେ ଧୋଇ
ବିକା ତା ନଯିବ ବୋଲି ଆସନ୍ତି ପକାଇ ଯେ

ଖଣ୍ଡ ପରଶୁ ଧାରଣ ପୁର ପରିଷ୍କାରେ
ନ ଦହନ୍ତି ଶାମୁକା ମୁକୁତା ବହ୍ନିନରେ ଯେ

ଯେଉଁ ହେମ କମଣ୍ଡଳୁ କମଳରେ ହୋଇ
ସେ ଭ୍ରହଣୁ ବାର ବାନେ ଦ୍ୱିକପାତ ନାହିଁ ଯେ

ହେ ସୁଜନମାନେ ଶ୍ରବଣ କରନ୍ତୁ । ସମୁଦ୍ର ମଧ୍ୟରେ ସିଂହଳ ଦ୍ୱୀପ ଅଛି । ସେ ଦ୍ୱୀପ ଅତି ଶୋଭା ପାଉଅଛି । ସେ ନଗରର ସୁନ୍ଦର ବର୍ଣ୍ଣିବାର ନୁହେଁ । କଟକ-କଙ୍କଣ ଯେପରି ଅଷ୍ଟରତ୍ନରେ ଶୋଭା ପାଏ ସେପରି ଲଙ୍କା ନଗରୀ ଅଷ୍ଟରତ୍ନରେ ପୂର୍ଣ୍ଣ ହୋଇ ଶୋଭା ପାଉଅଛି । କୁବେର ସମାନ ଧନବାନ୍ ବ୍ୟକ୍ତି ସେଠାରେ ଅଛନ୍ତି । ସେହି ନଗରୀରେ ଦୀନ-ଦରିଦ୍ର ଲୋକ କେହି ନାହାନ୍ତି । ଦୀନ ଶବ୍ଦ ଶୁଣାଯାଉଅଛି ଦେଖାଯାଉ ନାହିଁ । ଯେଉଁମାନଙ୍କର କୋଟି ସୁବର୍ଣ୍ଣ ମୁଦ୍ରା ହୁଏ, ସେମାନେ ଗୋଟିଏ ସ୍ୱର୍ଣ୍ଣ କଳଶ ଗୃହ ଉପରେ ବସାଇ ଥାନ୍ତି । ମୃଗମଦ-କସ୍ତୁରୀ ଯେଉଁ ନଗରୀରେ ଗୋରଚନା ପରି ବ୍ୟବହାର କରାଯାଏ, ସେହି ନଗରୀର ସୁଜନମାନେ ନୂତ ପୁରୁଣା ଲୁଗାକୁ ବର୍ଜ୍ଜ କରିଦିଅନ୍ତି । ସେ ନଗରୀରେ ସ୍ତ୍ରୀମାନେ ସର୍ବଦା କୁଙ୍କୁମ ଲଗାଇବା ହେତୁ ହଳଦୀ ପ୍ରତି ଆଦର କରନ୍ତି ନାହିଁ । ମାର୍ଗ ପରିଷ୍କାର କରିବା ଉଦ୍ଦେଶ୍ୟରେ ରତ୍ନାକର ଆଣିବାକୁ ଯାଇ ରତ୍ନାକର ଆଣନ୍ତି । ଶଗଡରେ ଆଣି ରାସ୍ତାରେ ପକାନ୍ତି । ଘରବାସୀ-ମାନଙ୍କୁ ହରିତକୀ ଆଣିବା ପାଇଁ ବୈଦ୍ୟମାନେ କହିଲେ ଜାଇଫଳ ଆଣନ୍ତି । ସେଠାର ଶବରୀମାନେ ଗନ୍ଧ ଶେଷରେ ଅରଣ୍ୟକୁ ଯାଇ ସିଂହ ବିଦାରଣ କରିଥିବା ହସ୍ତୀର ମୋତିକୁ ଗୋଟାଇ ଆଣନ୍ତି । ପାଚିଲା ବରକୋଳିକୁ ମଧ୍ୟ ଆଣନ୍ତି । ମୋତି ଓ ବଦରୀକୁ ଧୋଇ ଭାବନ୍ତି ଯେ ଗଜ ମୋତି ବର୍ଜ୍ଜ ହେବନାହିଁ ଭାବି ମୋତିକୁ ଫିଙ୍ଗି ଦେଇ ବରକୋଳିକୁ ବର୍ଜ୍ଜ ଉଦ୍ଦେଶ୍ୟରେ ରଖନ୍ତି । ମହାଦେବଙ୍କ ମନ୍ଦିର ପରିଷ୍କାର କରିବା ଦରକାର ହେଲେ ଶାମୁକା ନ ପୋଡି ସେଥିରେ ଚୂନ ଲେପି ଧଉଳାନ୍ତି । ଲଙ୍କା ନଗରୀରେ ସ୍ୱର୍ଣ୍ଣ ପୂର୍ଣ୍ଣ ମାତ୍ରାରେ ଥିବାରୁ ଲୋକେ ସୁନାକୁ ଆଦର କରନ୍ତି ନାହିଁ । କମନୀୟ ପ୍ରକୃତ ପୁଞ୍ଜକୁ ସମାବେଶ କରାଇ ଉପେନ୍ଦ୍ର ଭଞ୍ଜ ଲଙ୍କା ନଗରୀର ପ୍ରାଚୁର୍ଯ୍ୟକୁ ବଢ଼ାଇ ଅଛନ୍ତି ।

ଏଥି ଅନନ୍ତରେ ଶୁଣ ନରେ　　ମଳୟ ଗିରି ଉତ୍ତରେ
ସୁଧାନିଧି ନାମେ ପୁର　　କ ମନୋହର ଏ
ଧବଳ ବର୍ଣ୍ଣେ ଆକାଶେ　　ସେ ସୁଧାନିଧି ପ୍ରକାଶେ
ବିଦେଶୀ ମନ କୁମୁଦ　　କରେ ପ୍ରମୋଦ ଏ
ଅତି ଯତନେ ଧରନ　　ହୋଇଲେ ନେତ୍ର ପତନ
ରହଇ ତହିଁରେ ଲାଗି　　ହୋଇଣ ରାଗୀ ଏ
ଅନାଇଁ ଯେଉଁ ବଡ଼ଶ୍ରୀ　　ହରିହୟର ବଡ଼ଶ୍ରୀ
ଦୂରି ପଡ଼ିବାକୁ ଡ଼ରି　　ଗମନ୍ତି ଫେରି ଯେ
ସେ ନଗର୍ତ୍ତ ମଧ୍ୟ ସ୍ଥାନେ　　ଖେଳନ୍ତି ବାଳକମାନେ
ଶଶାଙ୍କ ଶଶାକୁ ପାଶ　　କରନ୍ତି ଗ୍ରାସ ଏ

ର. ନି.

ମଳୟ ଗିରିର ଉତ୍ତର ଦେଶରେ ସୁଧାନିଧି ନାମରେ ଗୋଟିଏ ସୁନ୍ଦର ନଗର ଅଛି । ସେ ସୁଧାନିଧି ପୁର ଧବଳ ବର୍ଣ୍ଣରେ ସୁଧାନିଧି ପରି ରହିଛି । ଏଣୁ କୁମୁଦରୂପକ ବିଦେଶୀମାନେ ଅତି ଆନନ୍ଦ ଲାଭ କରନ୍ତି । ଠିକ୍ ଭାବେ ଚାହିଁଲେ ସେ ନଗରୀ ଉପରୁ ଦୃଷ୍ଟି ଫେରାଇ ଆଣି ହୁଏ ନାହିଁ । ସେହି ସୁଧାନିଧି ନଗରୀର ବଡ଼ ଘର ଦେଖି ସୂର୍ଯ୍ୟଙ୍କର ଘୋଡ଼ାମାନେ ବଡ଼ ଭୟ କରି ଫେରନ୍ତି । ସେହି ନଗରୀରେ ଥିବା ନଗର୍ତ୍ତରେ ବାଳକମାନେ ଖେଳିବା ସମୟରେ ଚନ୍ଦ୍ରଙ୍କ ଦେହରେ ଥିବା ଶଶାକୁ ଧରି ଖେଳିଲା ପରି ଦିଶେ । ଏହି ବର୍ଣ୍ଣନାରୁ ସୂଚିତ ହୁଏ ଯେ ସୁଧାନିଧି ପୁରରେ ଥିବା ଘରଗୁଡ଼ିକ ଅତି ଉଚ୍ଚ ଅଟେ ।

ଯୁବା କାଳର ବୟସ ନବ ବସନ୍ତ ପରି । ବସନ୍ତ କାଳରେ ଜାତ ନବ ପଲ୍ଲବ ପରି ତାର ଓଷ୍ଠ ଲାଲ, ବାକ୍ୟ କୋକିଳ ପରି, ଶୋଷଣ ନଖ ନଆଳୀ ଫୁଲ ପରି, ଦେହର ଉଜ୍ଜ୍ୱଳ କାନ୍ତି କେତକୀ ଫୁଲ

ପରି । ଅଙ୍ଗୁଳି ଚମ୍ପା କଢ଼ି ପରି ଆଉ ନବୀନ ଜଘନ ପ୍ରଦେଶ ପାଚିଲା ଆମ୍ବ ପରି ରସଯୁକ୍ତ ଅଟେ । ନବଯୌବନର ଲକ୍ଷଣ ସହିତ ବସନ୍ତ ଋତୁର ତୁଳନା କରାଯାଇଛି ।

### ପୁରୁଷ ରୂପ ବର୍ଣ୍ଣନା

କନକ ପର୍ବତ ଉପରେ ମର୍କତ
ଶୃଙ୍ଗ ପ୍ରାୟେ ଦିବ୍ୟ ଜୁଡ଼ା
ସୁମନାବଳୀ ବେଷ୍ଟିତ ଚମ୍ପାଡ଼ିରୁ
ଶୋଭମା ବିବେକବୁଡ଼ା ରେ ସହି
ମଧ୍ୟେ ଝଲସେଲ ଘନ ରତ୍ନ
ଧାରି ପରି ଆଗ କୁଞ୍ଚ ଶୋଭି
ଚିତ୍ତ ଭୃଙ୍ଗକ ହୋଇଲା ସ୍ନେହି
ରଞ୍ଜିତ ସମ ସୁଅଳକ ବେଢ଼ରେ
ଶ୍ରୀମୁଖ ଶୋଭା ବିଧୁରେ
ମଧ୍ୟୁଁ କଳଙ୍କ ପୋଛି ବିଧି ପରିହି
କରିଛି କଳାନିଧିରେ ସଖି
ମତ୍ତ ଚକୋର ମୋହର ଆଖି
ହାସ ସୁଧାପାନେ ହେଲା ସୁଖୀ
ଏତେ ବିଚାର ନଥିଲା ଦେଖି
ଶ୍ରବଣ ଯୁଗଳେ ହୀରକ କୁଣ୍ଡଳ
ଶିର ଚୂଳନାରେ ଚଳ
କଉତୁକେ ବାନ୍ଧ ରଚନା କରନ୍ତି
ଗୁରୁ ଶୁକ୍ର ଖେଳେ ଦୋଳି ରେ ମିତ
କେସେ ମୋ ରାଶି ଉଚ୍ଚେ ଉଦିତ
କାଲି ଭଲ ଦଶା ଉପସ୍ଥିତ
ଅଛି ମଙ୍ଗଳ ଘାତରେ ଖ୍ୟାତ

ଉଚ୍ଚ ଘ୍ରାଣ ବ୍ୟାଜେ      ଚଞ୍ଚୁକୁ ଟେକ କା
ସ୍ୱରୂପ ରମ୍ୟକ ଦ୍ୱୀପ
ଭ୍ରମ ନାଗ ପାଶ      ଶ୍ୱାସ ନାଶ ଲଗ୍ନେ
ବାନ୍ଧାଉଛୁ ଖଗା ଧୂପ ରେ ସନ୍ଧି
ଲୋକେ ମୁଁ ·ପୁଣି ଭ୍ରମା ବୋଲାଇ
ମୋତେ ଯୋଡ଼ିଛି ଝରନ୍ଧ ଅନ୍ଧି
ବାଞ୍ଛା କଲେ ନକରିବ ଶାନ୍ତି
କପାଳ ଭ୍ରୂରୁ      ନେତ୍ର ଯେନ ସେ ତନୁ-
ବନ୍ତ କାମ ନୁହେ ସେ ଛନ୍ଦ
ଶମ୍ପାକ ଧନୁରେ      ସଙ୍ଗ ଭୃଙ୍ଗ ଗୁଣ
ବାଣ ମାଳାବଳକ ଚନ୍ଦ୍ରେ ସଖି
ଆନଠାକୁ ନ ବନ୍ଧନ୍ତି ଯୋଖି
ହୃଦ ଲକ୍ଷ କଲା କସ ଦେଖି
ସଖୀ ବୋଲେ ଶମ୍ଭୁ ଅଛୁ ରଖି
ବନ୍ଧ ପଡ଼ିଲା      ପ୍ରାପ୍ତେ ରଙ୍ଗ ରଧର
କ ଚହ ମନ୍ଦାର ଫୁଲ
ଗର୍ଭେ ଖଞ୍ଜିଛି      କେଉଁ ଧାତା ରଦନ
ଖୋଜେ କୁନ୍ଦ କଢ଼ୀ ମାଳ ରେ ମିତ
ସଦା ସ୍ଫୁଟ ଅସ୍ଫୁଟ ଅଦ୍ଭୁତ
ନପାଇଲେ ଚନ୍ଦ୍ରେ ମଧୁ ସତ
ଉଡ଼ିଯିବ ପ୍ରାଣ ମଧୁ ବ୍ରତ
ବସ୍ତ୍ରାର ଉରକ      ଦ୍ୱିପୃଷ୍ଠ କପାଟ
ଭ୍ରମାତନ୍ତ୍ର ବନ୍ଦୀ ଦୁର୍ଗ

ଵପୂପି ଭଷି ମନାଥି ଅପିଥିଲ

ତୋ ସ୍ତନ ସପୁଟ ଯୋଗ ରେ ବାଲା

ଅଛୁ ପ୍ରବାଳ ବଉଲ ମାଳା

ଦେଇଗଲ ଫରକ ପିଲୁଲା

ଶୁଣି ହସିଲ ଆନ କହିଲ

ବକ୍ଷ ତଳରୁ ଉଦର ଶେଷ ଯାଏ

ପ୍ରଭବ ବାଦ୍ୟ ସଦୃକେ

ଗଡ଼ିବା କାଳେ ଧାତା ଦୃଢ଼େ ଧରନ୍ତେ

ସେ ଭଙ୍ଗେ ମଧ୍ୟ କରେକେ ରେ ସହି

ସ୍ମିତ ପୃଥୁଳ ସେ ଯେନହୋଇ

ନାଭି ଛଳେ କୁଶ ମୁଦ୍ରା ଥୋଇ

ହସ୍ତେ ଧରବାର ସାକ୍ଷୀ ଦୁଇ

କଣ୍ଠ ଶଙ୍ଖ ଜିତ ମନ୍ଦର ତାଡ଼ନ

ବରାହ ବର ଅଖିତ

ସେ ନର କେଶରୀ ବଳୀ ଧ୍ୱଂସୀ ତେଜେ

ସହସ୍ର କର ବଜିତ ରେ ସହି

ମୂର୍ତ୍ତି ରାମ ବଳ ଖ୍ୟାତ ମହି

ବୁଧ ଗୁଣେ ଚନ୍ଦ୍ର ହ୍ରାସ ଶୋହି

ବସ୍ତୁ ଦଶ ରୂପ ଏକେ ବହି

କୋ. ବ୍ର. ସୁ.

କୋଟୀ ବ୍ରହ୍ମାଣ୍ଡ ସୁନ୍ଦରୀ ସଖୀମାନଙ୍କ ସହିତ ବନରେ ବିହାର କରୁଥିବା ବେଳେ ତାର ଇପ୍ସିତ ପୁରୁଷ ପୃଷ୍ଟକେଲୁକୁ ଦେଖି ସଖୀମାନଙ୍କୁ ପୁରୁଷର ଗୁଣ ଓ ରୂପ ସପର୍କରେ କହୁଅଛୁ

କନକ ପର୍ବତ-ମେରୁ ଉପରେ ମର୍କତ ଶୃଙ୍ଗ ପରି ସେହି ଯୁବକଙ୍କର ଶିରରେ ଉତ୍ତମ ଜୁଡ଼ା ଶୋଭା ପାଉଥିଲା । ଯେପରି ମେରୁଶୃଙ୍ଗ ରମ୍ଭା ତରୁ ପ୍ରଭୃତି ଶୋଭନା-ସୁନ୍ଦରୀ ଅପ୍ସରା ମାନଙ୍କର ବଦନକୁ ଲୁଚାଇଥିବା ସୁମନାବଳୀ-ଦେବତା ମାନଙ୍କ ବେଷ୍ଟିତ ସେପରି ଏ ଜୁଡ଼ା ସୁମନାବଳୀ ପୁଷ୍ପ ସମୂହରେ ବେଷ୍ଟିତ ହୋଇ ରମ୍ଭା-କଦଳୀ ବୃକ୍ଷ ସଦୃଶ ଉରୁରେ ସୁନ୍ଦରୀ ମାନଙ୍କର ବଦନକୁ ଲୁଚାଉ ଅଛି । ରେ ସଖୀ ମେରୁ ପର୍ବତ ମଧ୍ୟ ଭାଗରେ ମେଘ ରହିଲା ପରି ଏହାଙ୍କର ମଧ୍ୟରେ-କଟୀରେ ନୀଳଚେଲ-ବସ୍ତ୍ର ରହିଅଛି । ମେଘରୁ ଜଳଧାର ସ୍ରାବ ହେଲା ପରି ଆଗରେ ପଡ଼ିଥିବା ଲୁଗା କୁଞ୍ଚ ଶୋଭା ପାଉଥିଲା । ଚାତକ ମେଘ ଜଳରେ ସ୍ନେହୀ । ମୋର ନେତ୍ର ରୂପ ଚାତକ ତହିଁରେ ସ୍ନେହୀ ହେଲା ।

ରଞ୍ଜିତ ଓ ସମାନ ସୁଅଳକ-କୁଞ୍ଚିତ କ୍ଷୁଦ୍ରକେଶ ବେଢ଼ରେ ବିଧିପୂର୍ବକ ଶ୍ରୀମୁଖ ଶୋଭା ହୋଇଛି । ବୋଧହୁଏ ବିଧାତା ଚନ୍ଦ୍ରଙ୍କ ମଧ୍ୟରୁ କଳଙ୍କକୁ ପୋଛି ନେଇ ସେହି କଳଙ୍କରେ ପରିଧି କରିଛି । ଚନ୍ଦ୍ରଙ୍କ ଚାରି ପାଖରେ ବେଢ଼ ବୁଲିଛନ୍ତି । ରେ ସଖି ମୋହର ଆଖି ମତ୍ତ ଚକୋର ପକ୍ଷୀ ସଦୃଶ୍ୟ ହୋଇ ସେହି ଶ୍ରୀମୁଖ ଚନ୍ଦ୍ରର ହାସ ରୂପ ସୁଧାପାନ କରି ସୁଖୀ ହେଲା । ଏଡେ ବିଚିତ୍ର କେବେ ଦେଖି ନଥିଲି ।

କର୍ଣ୍ଣଦ୍ୱୟରେ ହୀରା ନିର୍ମିତ କୁଣ୍ଡଳ ଶିର ଚାଳନାରେ ଚଳି ଏପରି ଶୋଭା ପାଇଲା ଯେ ଗୁରୁ ଶୁକ୍ର ଦୁହେଁ କୌତୁକରେ ବାଦ ରଚନା କରି ଦୋଳି ଖେଳନ୍ତି କି ? ରେ ମିତ ! ସେ ଗୁରୁ କବି ଦୁହେଁ କଣ ମୋର ଉଚ୍ଚ ରାଶିରେ ଉଦିତହୋଇ ଭଲ ବର୍ଷା ଉପସ୍ଥିତ କଲେ । କିନ୍ତୁ ମଙ୍ଗଳ ଥିବାରୁ କିଞ୍ଚିତ୍ ବାଧା ଘଟିଲା ।

ସେ ସୁନ୍ଦର ପୁରୁଷ ରମ୍ୟକ ଦ୍ୱୀପ ସଦୃଶ୍ୟ । ରମ୍ୟକ ଦ୍ୱୀପରେ ଖଗାଧିପ-ଗରୁଡ଼ ଉଚ୍ଚ ଘ୍ରାଣ-ନାସା ବ୍ୟାଜରେ ଚଞ୍ଚୁକୁ

ଟେକିଛି କି ? ସେ ଗରୁଡ଼ ଶ୍ରୀ ରାମଚନ୍ଦ୍ରଙ୍କର ନାଗପାଶ ଫାସ ନାଶ କରିବା ଲଗ୍ନ-ସମୟରେ ବାହାରିଛି । ରେ ସଖି ! ମୁଁ ପୁଣି ଜଗତରେ ରାମା ବୋଲାଏ । ମୋତେ ବିରହ ଅଗ୍ନି ଘୋଟିଛି । ବାଞ୍ଛା କଲେ ଶାନ୍ତ କରିବ ନାହିଁକି ?

ସେ ସୁନ୍ଦର କପାଳ ଭ୍ରୂରୁ ଏବଂ ନେତ୍ର ଏମାନଙ୍କୁ ଦେଖ ଦେହଧାରୀ କନ୍ଦର୍ପର ଶୋଭା ପାଉ ଅଛନ୍ତି । ଏହା ମିଥ୍ୟା କଥା ନୁହେ କାରଣ କପାଳ ରୂପ ଶମ୍ପକ-ସନ୍ନାରୀ ଫୁଲ ଧନୁରେ ଭ୍ରୂଲତା ରୂପ ଭୃଙ୍ଗଗୁଣ ସଙ୍ଗ କରି ନୟନ ରୂପ ନୀଳାବ୍ଜକୁ ପଦ୍ମ ବାଣ ରୂପେ ଯୋଖି ରଖିଛି କି ? ରେ ସଖି ସେ ଶର ଯୋଖି ଅନ୍ୟଠାକୁ ବିନ୍ଧିଲା ନାହିଁ । କିଣ ଦେଖି ମୋ ହୃଦକୁ ଲକ୍ଷ କରି ବିନ୍ଧିଲା । ସଖୀ କହିଲା କାମ ଶତ୍ରୁ କୁଚ ରୂପ ଶମ୍ଭୁଙ୍କୁ ହୃଦୟରେ ରଖିଛୁ ।

ରଙ୍ଗ ବନ୍ଧୁ ପଡ଼ିଲା ପରି ଅଧର କି ବିରାଜ ହୋଇଛି । କେଉଁ ବିଧାତା ମନ୍ଦାର ଫୁଲ ଗର୍ଭରେ ଦନ୍ତ ଛଳରେ କୁନ୍ଦକଢ଼ୀ ମାଳା କରି ଖଞ୍ଜିଛି । ହେ ମିତ ଅଧର ରୂପ ମନ୍ଦାର ଫୁଲ ସବୁବେଳେ ଫୁଟି ହୋଇଛି । କିନ୍ତୁ ଦନ୍ତ ରୂପ କୁନ୍ଦ କଢ଼ୀ ସବୁବେଳେ ଅଫୁଟ ଏହା ଅଦ୍ଭୁତ କଥା । ତହୁଁ ମଧୁ ନପାଇଲେ ମୋ ପ୍ରାଣ ରୂପ ମଧୁବ୍ରତ ନିଶ୍ଚୟ ପିଣ୍ଡରୁ ଉଡ଼ିଯିବ ।

ତାଙ୍କର ବିସ୍ତାର ଉର ରମଣୀମାନଙ୍କ ଚିତ୍ତ ବନ୍ଦୀ ହୋଇଥିବା ଦୁର୍ଗର ଦ୍ୱିପୁଟ କବାଟ କି ? ସଖୀ କହେ ସେ ଯାଉଁଳି କବାଟ ସଦୃଶ୍ୟ ବକ୍ଷ ସ୍ଥଳ ତୋ ସ୍ତନ ରୂପ ସଂପୁଟର ଯୋଗକୁ ମନାସ କରି ଆସିଥିଲା । କବାଟରେ ବଉଳମାଳା ରହିଥିଲା ପରି ବକ୍ଷ ସ୍ଥଳରେ ପ୍ରବାଳମାଳା ଅଛି । ପିତ୍ତଳା ସଦୃଶ୍ୟ ପଦକକୁ ତୋରେ ଦେଇଗଲା । ଏହା ଶୁଣି ସୁନ୍ଦରୀ ହସିଲା, ଏବଂ ଅନ୍ୟ କଥା କହିଲା । କବାଟରେ ଫମ୍ପୁଆ ବଉଳ-ମାଳ ଓ ପିତ୍ତଳା ଥାଏ । ପ୍ରାଚୀନ କାଳରୁ ଆରମ୍ଭ କରି ମଧ୍ୟ ଯୁଗର

ଶେଷ ପର୍ଯ୍ୟନ୍ତ ଘର ଛଅାଣି କଲେ ଦ୍ୱାର ବନ୍ଧ ଓ କବାଟରେ ନାନା ପ୍ରକାର ଚିତ୍ର ଥାଏ । ଆଜକାଲି ଯୁଗରେ ସେ ସବୁର ଚିତ୍ର ଦେଖି-ବାକୁ ମିଳେନାହିଁ । ବନ୍ଧ ତଳରୁ ଉପର ଶେଷ ପର୍ଯ୍ୟନ୍ତ ପ୍ରଣବ-ବାଦ୍ୟ କ୍ଷୁଦ୍ର ଡ଼କ୍କା ପ୍ରାପ୍ତ ହୋଇଅଛି । ବିଧାତା ଗଠନ କଲାବେଳେ ଦୃଢ଼ ରୂପେ ଧରିବାରୁ ସେ କଣ୍ଠି ସରୁହୋଇ ଅଛି କି ? ସେ ଯେମନ୍ତ ପୃଥୁଳ ହୋଇଛି । ତେବେ ଏଦୁଇକଥା ହାତରେ ଧରିଥିବାର ସାକ୍ଷ୍ୟ ହେଲା । ରେ ସଖି ସେ ସୁନ୍ଦର ପୁରୁଷ ବିଷ୍ଣୁଙ୍କର ଦଶ ଅବ-ତାରକୁ ବହୁ ଅଛନ୍ତି । ବିଷ୍ଣୁ ମୀନ ଅବତାରରେ ଶଙ୍ଖାସୁରକୁ ଜିଣିଥିଲେ । ଏହାଙ୍କର କଣ୍ଠ ଶଙ୍ଖକୁ ଜିଣିଅଛି । ବିଷ୍ଣୁ କୂର୍ମାବତା-ରରେ ମନ୍ଦର ପର୍ବତକୁ ପିଠିରେ ଧରିବାରୁ ତାହାଦ୍ୱାରା ତାଡ଼ନ ପାଇଥିଲେ । ଏ ଦୁଷ୍ଟ ଲୋକର ତାଡନକାରୀ ଅଟନ୍ତି । ଭଗବାନ୍ ବରାହ ଅବତାର ଧାରଣ କରିଥିଲେ । ଏ ପୁରୁଷ ଶ୍ରେଷ୍ଠ ଯୁଦ୍ଧରେ ନିର୍ଭୀକ ଭାବ ଦେଖାଉ ଅଛନ୍ତି । ବିଷ୍ଣୁ ନୃସିଂହ ରୂପଧାରଣ କରିଥିଲେ ଏ ଲୋକ ମଧ୍ୟରେ ଶ୍ରେଷ୍ଠ ବୋଲି ପ୍ରତିପାଦିତ । ଭଗବାନ୍ ବାମନା-ବତାରରେ ବଳୀକୁ ଧ୍ୱଂସ କରିଥିଲେ । ଏ ପୁରୁଷ ବଳମାନ ଶତ୍ରୁ ମାନଙ୍କୁ ଧ୍ୱଂସ କରୁ ଅଛନ୍ତି । ଭଗବାନ୍ ପର୍ଶୁରାମାବତାର ଧାରଣ କରି ବୀର ତେଜରେ ସହସ୍ରାର୍ଜ୍ଜୁନକୁ ଜିଣି ଥିଲେ । ଏ ତେଜରେ ସହ-ସ୍ରକର-ସୂର୍ଯ୍ୟଙ୍କୁ ଜିଣି ଅଛନ୍ତି । ଭଗବାନ୍ ରାମାବତାର ହୋଇଥିଲେ ଏ ପୁରୁଷ ରମଣୀୟ ମୂର୍ତ୍ତି ଧାରଣ କରି ଅଛନ୍ତି । ଭଗବାନ୍ ବଳରାମ ଅବତାର ହୋଇ ବଳବାନ୍ ବୋଲି ମହୀରେ ଖ୍ୟାତି ଲଭିଥିଲେ । ଏ ପୁରୁଷ ବଳବାନ୍ ବୋଲି ଜଗତରେ ଖ୍ୟାତି ଲଭି ଅଛନ୍ତି । ଭଗବାନ୍ ବୁଦ୍ଧାବତାର ହୋଇ ଜଗତରେ ଜ୍ଞାନ ମାର୍ଗ ପ୍ରଚୁର କରିଥିଲେ । ଏ ପୁରୁଷ ପଣ୍ଡିତ ଓ ଜ୍ଞାନୀ ବୋଲି ଜଗତରେ ପରିଚିତ ଅଟନ୍ତି ଭଗବାନ୍ କଲ୍କୀ ଅବତାର ହୋଇ ଚନ୍ଦ୍ରହାସ ଖଡ୍ଗ

ବା'ର ଶୋଭ ପାଉଥିଲେ । ଏ ପୁରୁଷ ମଧ୍ୟ ଚନ୍ଦ୍ର ହାସ ତୁଳ୍ୟ ଖଡ଼ଗ ଧାରଣ କରି ଅଛନ୍ତି ଏବଂ ଚନ୍ଦ୍ର ତୁଳ୍ୟ ଶୁଭ୍ରହାସକୁ ପ୍ରକାଶ କରୁଅଛନ୍ତି । ଭଗବାନ୍ ବିଷ୍ଣୁଙ୍କର ଦଶାବତାର ଲକ୍ଷଣ ଏହି ରାଜ-କୁମାରଙ୍କଠାରେ ପ୍ରକାଶ ହୋଇ ଅଛି ।

ସ୍ତ୍ରୀର ଅଙ୍ଗ ପ୍ରତ୍ୟଙ୍ଗ ବର୍ଣ୍ଣନା

ସୁକୁନ୍ତଳା ସୁକୁନ୍ତଳ          ନୀଳ କୁଟିଳ ଗନ୍ଧଳ
ଚିକ୍କଣ ଲମ୍ବ ବିଭିନ୍ନ ବାସ ନିବାସ

ସୁହୃଦ ମୂଢ଼ ବରହୀ          ପୁଚ୍ଛ ଲକ୍ଷ୍ୟ ହେବାପାଇଁ
ଗଲଥା ପାଇଲା ଯାର କେଶ ପାଶ
ସେ ଚିହ୍ନ ଚନ୍ଦ୍ରିକା ପ୍ରମାଣ
ସଭୟ ହୋଇଲେ ଶୁଣି ଉପମାଗଣ ।

ଶିକର ଅଶ୍ରୁ ନିକର          ମୁଞ୍ଚିକାଳେ ଜଳଧର
ଉଦେ ହୋଇ ଅନୁକ୍ଷଣେ କରେ ଯା ଘୋଷ
ଶୁଣାଇ ସବୁଙ୍କୁ କହି          ମୁଁ କେଶ ସମାନ ନୋହି
ଘନ କେଶୀ ବୋଲିବାର କବିଙ୍କ ଦୋଷ

ସୁହୃଦତା କଜ୍ଜ୍ୱଳ କଲା
ସଦଳିତ ହୋଇ ନେତ୍ର ଅଞ୍ଜନ ହେଲା ।
ସୁମନସେ ଦେଇଚୁମ୍ବ          ଝଙ୍କାର ଛଳେ ବିଲମ୍ବ
କହନ୍ତି ବିନୟ ବାଣୀକି ଅନୁସରି
ସୁନାସି କେଶ ଅଛିନେ          ଭୃଙ୍ଗଙ୍କୁ ନେଲେ ବଚନେ
କହିବ ଆମ୍ଭ ମାନଙ୍କୁ ସମ୍ଭାଳି କରି
ସୁମନ ରଜେ ସେ ଧୂଷର
ସୁକେଶୀ ତୋ କେଶ ଛବି ଦାସ ଭ୍ରମର ।

ସୁର ସୁତା ଖଚ ଛଟଳ କର ଉପରକୁ ଟେକିଲେ
ହାରଳ ବୋଲ ଓଲଟି କ ଶିରୋଧାମୀ
ହୃଦପଣ୍ଡଠାରେ ତକ୍ଷକ ଶରଣ ଗନ୍ଧ ପ୍ରାପ୍ତେକ
କବରୀ ମଧ୍ୟ ଚାମର ଲୁଚିଲା ଲାଜେ
ଫଣ୍ଗାଭଫୁ ଲଭକ ତମ
ସଭ୍ୟରେ ଗନ୍ଧ୍ୟରେ କଲା ଯାଇ ବିଶ୍ରାମ ।
ଫି ହିକା ସୂତ ବବେକ କେଶ ଉପମାରେ ଧିକ
କରବେ ମୋହେତ ଲୋକେ ଏହା ଜାଣିଲା
ଚନ୍ଦ୍ର ନପାର ଚମନ ଚନ୍ଦ୍ରିକା ସନ୍ଦରଣେ
ଢାଡକୁ ଏ ପାଞ୍ଚେ ଆଗୁଁ ଦ୍ଵିଖଣ୍ଡ ହେଲା
ସେହି କଥା ଏବେ ସେ ଶୁଣି
ସଧା କାହିଁ କ ଖାଇଳ ହୁଅଇ ଗୁଣି । ସୂ.ପ

ସୁଭଦ୍ରାଙ୍କର କେଶ, ମାଳ, କୁଟିଳ, ଗହଳ, ଟକ୍‌କଣ ଲମ୍ବ ହୋଇ ନାନା ପୁଷ୍ପର ସୁବାସ ବାସ କରିଅଛି । ଏକଥା ଜାଣି ମୟୂର ମୂର୍ଖ ବୁଦ୍ଧିରେ ଲୋକେକଣ-ବ୍ରହ୍ମାଙ୍କ ନିକଟରେ ଯାଇ କହିଲା ମୋର ପୁଚ୍ଛ ଠାରୁ କଣ ସୁଭଦ୍ରାର କେଶ ଉତ୍କୃଷ୍ଟ କି ? ଏକଥା ଶୁଣି ବ୍ରହ୍ମା ମୟୂରକୁ ଗଳଥା ଦେଇ କହିଲେ ରେ ମୂର୍ଖ ମୟୂର ସୁଭଦ୍ରାର କେଶ ପୁଷ୍ପ ବାସରେ ବାସିତ ହୋଇ ପୂଜିତ ହେଉଅଛି ! ତୋର ପୁଚ୍ଛ ସେପରି ନୁହେଁ । ସେହି ଗଳଥାରେ ଚିହ୍ନ ମୟୂର ପୁଚ୍ଛରେ ଚନ୍ଦ୍ରିକା ହୋଇ ରହିବା ଦେଖି ଅନ୍ୟ ଉପମା ମାନେ ଭୟ ପାଇ ଭୁନ ହେଲେ । ବ୍ରହ୍ମାଙ୍କର ଗଳଥା ପାଇବା ପରେ ଚନ୍ଦ୍ରିକା ହେବା କଥା ଏହିପେ ବ୍ରହ୍ମା ସୃଷ୍ଟିକର୍ତ୍ତା । ସେ ସୃଷ୍ଟି ତିଆର କଲା ବେଳେ ହାତରେ ନାନାବ ରଙ୍ଗ ଲାଗିଥାଏ । ଗଳଥା ଦେଲା ବେଳେ ସେହି ରଙ୍ଗ ମାନଙ୍କର ଚିହ୍ନ ଲାଗି ଚନ୍ଦ୍ରିକା ହୋଇ ରହିଅଛି । ସୁଭଦ୍ରାଙ୍କର

କେଶ ଦେଖି ମେଘ ଜଳ ବନ୍ଦୁ ରୂପକ ଅଶ୍ରୁ ବର୍ଷଣ କରି, ଘଡ଼ଘଡ଼ ରୂପକ ରଡ ଛାଡ଼ି କହୁଅଛି ମୁଁ ସୁଭଦ୍ରାର କେଶ ସହିତ ସମାନ ନୁହେଁ । ଏଣୁ ଘନକେଶୀ ବୋଲି ବାର କବିଙ୍କର ଦୋଷ ଅଛି । ଏସବୁ କଥା ଦେଖି କଜ୍ଜଳ ସୁହୃଦ ପଣରେ, ମର୍ଦ୍ଦନ-ଦ୍ରୋହ-ଆର୍ଷିରେ ଲାଗି ରହିଗଲା । ଭ୍ରମରମାନେ ଝଙ୍କାର ଛଳରେ ଫୁଲରେ ଚୁମ୍ବ ଦେଇ ବନୟରେ କହୁଅଛନ୍ତି ଉତ୍ତମା ନାରୀ ସୁଭଦ୍ରାର କେଶ ଯୋଡ଼ିବାକୁ ନେବା ସମ୍ମୁଖରେ ତୁମ୍ଭେମାନେ ତାଙ୍କୁ କହିବ ଆମ୍ଭମାନଙ୍କୁ ସେ ସମ୍ଭାଳନ୍ତୁ । ଫୁଲର ପରାଗରେ ଧୂସର ହୋଇ ସେ ସୁକେଶୀର ଭୃତ୍ୟ ହୋଇ ଅଛନ୍ତି । ଯମୁନା ନଦୀ ଲହରୀ ଛଳରେ ହାତ ଉପରକୁ ଟେକିଲା ପ୍ରାୟ ଦେଖାଯାଏ । ଏଥିର କାରଣ ସୁଭଦ୍ରାର କେଶ ଯମୁନା ନଦୀ ଜଳପ୍ରାୟ ତେଣୁ ଯମୁନା ନଦୀ ସୁଭଦ୍ରାର କେଶ ପାଖରୁ ହାରିଗଲି ବୋଲି କହୁଛି । ଗରୁଡ଼ ପାଦରେ ତକ୍ଷକ ଶରଣ ପଶିଲା ପରି ମୁଣ୍ଡର ଜୁଡ଼ା ଦେଖି ତଅଁର ଲଜରେ ଲୁଚି ରହିଲା । ତମ-ଅନ୍ଧାର କେଶ ସହିତ ସମାନ ନ ହୋଇ ପ୍ରାଣ ଭୟରେ ଗହ୍ୱରରେ ଯାଇ ଲୁଚି ରହିଲା । ବିବେକୀ ରାହୁ ସୁଭଦ୍ରାର କେଶ ତୁଳନାରେ ସମାନ ନ ହୋଇ ଭାବନା କରୁଅଛି । ଏକଥା ଜାଣି ମୋତେ ଲୋକେ ଧିକ୍କାର କରିବେ । ସେତେବେଳର ଅପମାନ ମୁଁ ସହି ପାରିବି ନାହିଁ । ଏକଥା ମନରେ ଭାବି ଆଗରୁ ସୁଦର୍ଶନ-ଚକ୍ର-ଆଘାତରେ ଦୁଇ ଖଣ୍ଡ ହୋଇଗଲା । ଏବେ ପୁଣି ରାହୁ ଭାବୁଛି ମୁଁ କାହିଁକି ଅମୃତ ଖାଇ ବଞ୍ଚି ରହିଛି । ମୁଁ ତ ସୁଭଦ୍ରାର କେଶ ସହିତ ସମାନ ନୁହେଁ ।

କୁନ୍ତଳ କାଳିନ୍ଦୀ ଜଳ ଜଳଦ କଜ୍ଜଳ
କାଏ ତମ ତାମସ ତମାଳ ଝଳ ମାଳ ଯେ

କଗ୍ମମର ଭ୍ରମର ଅମର ବର ମଣି
ଶୁଚି ସୁରୁଚି କସ୍ତୁରୀ ଶିଖୀ ପୁଚ୍ଛ ଜିଣି ଯେ । ଲା· ବ·

ଲାବଣ୍ୟବତୀର କେଶ ବର୍ଣ୍ଣନା ପ୍ରସଙ୍ଗରେ କବି କହି ଅଛନ୍ତି, ଲାବଣ୍ୟବତୀର କେଶ ଯମୁନା ଜଳ ଠାରୁ ଅଧିକ କଳା ହୋଇଅଛି । ଜଳଦ-ମେଘ କଜ୍ୱଳ, ତମ-ରାହୁ, ତାମସ-ଅନ୍ଧାର, ତମାଳ ଖତମାଳ-ମେଘ ଭ୍ରମର ଅମରବର ମଣି-ଇନ୍ଦ୍ର ନୀଳମଣି ଶିଖୀପୁଚ୍ଛ-ମୟୂର ପୁଚ୍ଛ, ଯମୁନା ଜଳ ମେଘ, କଜ୍ୱଳ, ତମ, ତାମସ, ତମାଳ, ଭ୍ରମର, ଇନ୍ଦ୍ର ନୀଳ ମଣି, ଶିଖୀପୁଚ୍ଛ, କସ୍ତୁରୀ ପ୍ରଭୃତିକୁ ଜିଣିଅଛି ।

## ମୁଖ ବର୍ଣ୍ଣନା

ସୃଷ୍ଟି କର୍ତ୍ତାଜାତ ସ୍ଥାନ ସୁଶ୍ରୀ ନିବାସ ତପନ
ଶ୍ରୀ ନିବାସ କରେ ବାସ ଅଟେ ମୋହର
ସାରସ ଏ ଗବବନ୍ଧି ଶୁଭ୍ରାଂଶୁ ଏମନ୍ତ ତଦ୍ଧିଁ
ମୂର୍ଦ୍ଧି ସାଗର କୁମର ସୁଧା ଶରୀର
ସୋଦର କମଳାର ପୁଣି
ସାଧୁ କେବଢ଼ ନାଶ ମୁଖ ନୋହିବ ଜିଣି
ସମ୍ଭବ ହୃଦସ୍ଥ ପାସେ ଏ ପାଞ୍ଚ କର ତୁରିତେ
ଲପନ ସଙ୍ଗତେ ତୁଳି ହୁଅନ୍ତେ ଆସି
ସେ ଶଙ୍କ ଜାଣି କମଳ ଫିଙ୍ଗି ଦେଲା ପଡ଼େ ଜଳ
ତୁଳିବାରେ ଲଘୁ ହୋଇ ଉର୍ଦ୍ଧ୍ୱଗ ଶଶୀ
ସଂଯୋଗ ତୁଳ୍ୟହୀନ ଦଇବ
ସେ ଯୋଗରେ କଲା ଏଥି ଏହା କହିବ । ସୁ. ପ.

ସୁଭଦ୍ରା ମୁଖ ବର୍ଣ୍ଣନା ପ୍ରସଙ୍ଗରେ କବି କହି ଅଛନ୍ତି ପଦ୍ମ କହୁଛି ସୃଷ୍ଟି କର୍ତ୍ତାଙ୍କର ଜାତ ସ୍ଥାନ । ଏଣୁ ବ୍ରହ୍ମାଙ୍କୁ କମଳ

ସମ୍ଭବ କୁହାଯାଇଅଛି । ଲକ୍ଷ୍ମୀଙ୍କର ବାସ ସ୍ଥାନ । ବିଷ୍ଣୁଙ୍କ କରରେ ମୋର ବାସ ସ୍ଥାନ ହୋଇଅଛି । ପଦ୍ମ ଏପରି ଗର୍ବ କରି ବ୍ରହ୍ମାଙ୍କ ନିକଟକୁ ଯିବାକୁ ଉଦ୍ୟତ ହେଲାବେଳେ, ଚନ୍ଦ୍ର କହିଲା ମୁଁ ସାଗର କୁମର ଓ ସୁଧା ଶରୀର । ପୁଣି କମଳାଙ୍କର ସୋଦର । ମୋଠାରୁ ସେ କାହାର ମୁଖ ଅଧିକ ହୋଇ ପାରିବ ? ଏହା ଦେଖି କବି କଳ୍ପନା କରୁ ଅଛନ୍ତି ଯେ, ସୁଭଦ୍ରା ମୁଖ ସହିତ ଏ ଦୁହେଁ ସମାନ ହୋଇପାରିବେ ନାହିଁ । ସୃଷ୍ଟି କର୍ତ୍ତା ବ୍ରହ୍ମା ଏ ଦୁଇଙ୍କୁ ସୁଭଦ୍ରାଙ୍କର ମୁଖ ସହ ତୁଳିଲେ । ପଦ୍ମ ସମାନ ନ ହେବାରୁ ଫିଙ୍ଗି ଦେଲେ ସେ ଯାଇ ପାଣିରେ ପଡ଼ିଲା । ଚନ୍ଦ୍ର ଉଚ୍ଛ୍ୱାସ ହେତୁ ଆକାଶକୁ ଉଠିଗଲା । ଦୁଇ ଜଣଙ୍କୁ କହିଲେ ତୁହିନ ତୁହିନ ବୋଲି କହି ତୁହିନରେ ସଂଯୋଗ କରାଇଲେ ।

ଚନ୍ଦ୍ରମାରୁ ପଦ୍ମ ଜନମ କରିଣ
ସ୍ୱଭାବେ ବହିଛି ସୁଷମା
କ୍ଷଣେ କ୍ଷଣେ କଥା ପ୍ରସଙ୍ଗ ସମରୁ
ଜାତ କରେ ଏବେ ଚନ୍ଦ୍ରମା

ସେନ ଏକଥା
ମାନତ ଅଦୃଷ୍ଟି ଅଶ୍ରୁତ
ଚନ୍ଦ୍ର କମଳ ଜଳୁଁ ଜାତ ବୋଲିଣ
ପୁରାଣମାନେ କହିଛନ୍ତି । ପ୍ରେ· ସୁ·

ଚନ୍ଦ୍ରମାରୁ ପଦ୍ମ ଜନମ ହୋଇ ସୁନ୍ଦର ଦିଶୁଛି । କ୍ଷଣ କ୍ଷଣକେ କଥା ପ୍ରସଙ୍ଗ ସମରୁ ଚନ୍ଦ୍ରମା ଜାତ କରୁଛି । ଏକଥା ଦେଖା ଯାଉନାହିଁ ବୋଲି କିଏ କହି ପାରନ୍ତି । ମାତ୍ର ଦେଖାଯାଉଛି । ଚନ୍ଦ୍ର ଓ ପଦ୍ମ ଦୁଇ ଜଣ ଜଳରୁ ଜାତ ବୋଲି ପୁରାଣମାନେ କହିଅଛନ୍ତି ।

କବି ବର୍ଣ୍ଣନା କରି ଅଛନ୍ତି ଯେ ଚନ୍ଦ୍ରରୁ ପଦ୍ମ ଜନ୍ମ ହୋଇଅଛି, ଏବଂ ପଦ୍ମରୁ ଚନ୍ଦ୍ର ମଧ୍ୟ ଜନ୍ମ ହୋଇଅଛି । ଏହା ବଡ଼ ଆଶ୍ଚର୍ଯ୍ୟ ହେଲେ ମଧ୍ୟ ଦେଖାଯାଏ । ଚନ୍ଦ୍ର ତୁଲ୍ୟ ମୁଖରୁ ନେତ୍ର ପଦ୍ମ ଜାତ ହୋଇଅଛି, ଏବଂ ପଦ୍ମତୁଲ୍ୟ ମୁଖରୁ ହାସ ରୂପକ ଚନ୍ଦ୍ର ଜାତ ହୋଇଅଛି । ଏହିପରି ଅଦ୍ଭୁତ ଉପମା ଦେଇ ସେହି ସ୍ଥାନରେ ଚମତ୍କାର ସଂଯୋଜନା କରି ଅଛନ୍ତି ।

ସ୍ତ୍ରୀର ଅଙ୍ଗ ପ୍ରତ୍ୟଙ୍ଗ ବର୍ଣ୍ଣନା

ସର୍ବ ପୂରେ ସଇ                    ପର୍ବତ କହିଲେ
ମହୀଜାତ ହେମ ମଞ୍ଜରି
ସୁଗନ୍ଧ ବଣ୍ଟି                    ଝୁଇଛାଟରେ ଚକିତ
ପଦ୍ମାବଳୀରେ କ ମାଧୁରୀ ସଫୁଲ୍ଲି
ତହିଁ ପୁଣି ଫୁଲ ଏତେକ
ସଂଗରୁଡ଼ ଚମ୍ପା                    କୁମୁଦ ପାଟଳୀ
ନଆଳି ଶିରୀଷ ଅଶୋକ
ସଫଳ ଆମ୍ବ                    ଡାଳିମ୍ବ ବମ୍ବଦ୍ରାକ୍ଷା
ଭୁମ୍ବୀନାରଙ୍ଗ ମାତୁଲାଙ୍ଗ
ସାରଙ୍ଗ ଖଞ୍ଜନ                    ଚକୋର ମୟୂର
ଶୁକ କପୋତ ହଂସ ସଙ୍ଗ ସ୍ୱରୂପ
ମହା ଅଦ୍ଭୁତ କଥା ଏହି
ସପତ ଜାତ                    ଫୁଲ ଫଳ ବିହଙ୍ଗ
ଲତା କେ ଥିବା ଶୁଣି ନାହିଁ । ସୁ. ପ.

ସୁଭଦ୍ରାଙ୍କର ରୂପବର୍ଣ୍ଣନା ସୁଧର୍ମା ସଭାରେ ଆଲୋଚନା ହେଉ ଥିବା ବେଳେ ସମସ୍ତ ଋଷିମାନେ ସେହି ସ୍ଥାନରେ ଉପସ୍ଥିତ ଥିଲେ । ସେଠାରୁ ପର୍ବତ ନାମକ ମହର୍ଷି ଆସି, ସମସ୍ତ ସୁନ୍ଦର ସ୍ଥାନକୁ ଯାଇ କହିଲେ ପୃଥ୍ୱୀରେ ଗୋଟିଏ ସ୍ୱର୍ଣ୍ଣ ଲତା ଜାତ ହୋଇଅଛି ! ସେହି ଲତାରେ ପତ୍ରାବଳୀ ସୁନ୍ଦର ହୋଇ ରହିଅଛି, ଏବଂ ସେ ସୁଗନ୍ଧବର୍ଣ୍ଣ ଅଟେ । ଅର୍ଥାତ୍ ସୁଭଦ୍ରାଙ୍କର ଅଙ୍ଗ ସ୍ୱର୍ଣ୍ଣ ଲତାପରି, ଏବଂ ପଦ୍ମିନୀ ଜାତୀୟା ସ୍ତ୍ରୀ ହୋଇ ଥିବାରୁ ସୁଗନ୍ଧବର୍ଣ୍ଣ ଅଟେ । ସେହି ଶରୀରର ରୋମାବଳୀ ପତ୍ର ପରି ଅଟେ । ସେହି ସୁଭଦ୍ରା ରୂପକ ସ୍ୱର୍ଣ୍ଣ ଲତାରେ ପଦ୍ମ ଚମ୍ପା କୁମୁଦ ପାଟଳୀ ନଆଳୀ ଶିରୀଷ ଅଶୋକ ଫୁଲ ଫୁଟି ସୁନ୍ଦର ଦିଶୁ ଅଛି । ସୁଭଦ୍ରାଙ୍କର ମୁଖ ପଦ୍ମପରି ହସ୍ତର ଅଙ୍ଗୁଳୀ ଚମ୍ପାଫୁଲର କଢ଼ିପରି । କୁମୁଦ ଭୁଲାହାସ । ପାଟଳୀପରି ବର୍ଣ୍ଣ । ହାତର ନଖ ନଆଳୀପରି ଶରୀରର କୋମଳତା ଶିରୀଷ ପୁଷ୍ପପରି । ପାଦର ଅଙ୍ଗୁଷ୍ଠି ଗୁଡ଼ିକ ଅଶୋକ କଳିକା ପରି-ହୋଇ-ଶୋଭା ପାଉ ଅଛି ! ଆହୁରି ସେହି ସ୍ୱର୍ଣ୍ଣଲତାରେ ଫଳ ଫଳିଛି । ଆମ୍ବ ଡାଳିମ୍ବ ବମ୍ବ ଦ୍ରାକ୍ଷା ତୁମ୍ବୀ ନାରଙ୍ଗ ମାତୁଲଙ୍ଗ ଏହି ଫଳ ଅଛି ସୁଭଦ୍ରାଙ୍କର ଶରୀର ଶିର ପ୍ରଶିର ବର୍ଦ୍ଧିତ ପାଚିଲା ଆମ୍ବପରି । ଡାଳିମ୍ବ ବୀଜ ପରି-ଦନ୍ତ, ଅଧର ପାଚିଲା କଇଁଚି କାକୁଡ଼ି ପରି । ଭାଷା ଦ୍ରାକ୍ଷା ପରି ମଧୁର । ଲାଉପରି ନିତମ୍ବ । ଅଧର ତଳଭାଗ ନାରଙ୍ଗପରି ଗଠିତ । ମାତୁଲଙ୍ଗ ପରି ସ୍ତନ । ସେହି ସ୍ୱର୍ଣ୍ଣ ଲତାରେ ସାତଗୋଟି ପକ୍ଷୀ ଅଛନ୍ତି । ସାରଙ୍ଗ--କୋକିଳ ପରି ସ୍ୱର । ଖଞ୍ଜନ ପକ୍ଷୀର ଚଞ୍ଚଳ ଗତି ପରି ଆଖି । ଚକୋର ପରି ମୁଖର ଗୋଲାକାର । ମୟୂର ପୁଚ୍ଛପରି କେଶ, ଶୁକର ନାସାପରି ନାସା, କପୋତର କଣ୍ଠ ପରି କଣ୍ଠ ହଂସର ମୟୂର ଗତି ପରି ଗତି ହୋଇ ଅଛି । ଏପରି ସପ୍ତ ଜାତି ପ୍ରକୃତିଜାତ ଫୁଲ, ଫଳ, ବିହଙ୍ଗ ଲତାରେ ଥିବା ଶୁଣା ନାହିଁ ।

ନବବର୍ଣ୍ଣତା — ଅପୂର୍ବ ପୁଷ୍ପଲତା
ପ୍ରକାଶ ଷୋଳ ଜାତି ଫୁଲ
ତିଳ ପୁଷ୍ପ କୁନ୍ଦ ଗୁର କମଳ
କୁମୁଦ ବନ୍ଧୁଲି — ପାଟଳୀ ନଆଳୀ
ଚମ୍ପା ଶିରୀଷ ଉତ୍ପଳରେ ସୁନ୍ଦର
ଷଣ କୁସୁମ ଅଶୋକ ମନ୍ଦାର
ଭେଶୀ ଭୃଙ୍ଗ ମୁଁ ଚୁମ୍ବନେ ଆତୁର
କେତକୀ ବଚନା — ଅଙ୍ଗୀକାର ମନା
କଲେ ସରଳଟି ମୋର ରେ ଲ.ବ

ଲାବଣ୍ୟ ବତୀ ନକଟକୁ ଚନ୍ଦ୍ରଭାନୁ ଲେଖିଥିବା ପତ୍ର ଦେଇ ସେଥିରେ ରସିକ ଲେଖିଅଛି । ନୂତନ ସ୍ତ୍ରୀ ଅପୁର୍ବ ପୁଷ୍ପ ଲତା ହୋଇ ଅଛି । ଲତା ଗୋଟିକରେ ଗୋଟିଏ ଫୁଲ ଥିବାକଥା ମାତ୍ର ଏହି ଅପୂର୍ବ ପୁଷ୍ପ ଲତାରେ ଷୋଳ ପ୍ରକର ଫୁଲ ଫୁଟି ଅଛି । ତିଳପୁଷ୍ପ କୁନ୍ଦ ଗୁର ପ୍ରକାର ପଦ୍ମ କୁମୁଦ, ବନ୍ଧୁଲି, ପାଟଳୀ, ନଆଳୀ, ଚମ୍ପା ଶିରୀଷ, ଉତ୍ପଳ, ଷଣ, ଅଶୋକ.ମନ୍ଦାର, ଫୁଲ ଫୁଟି ଅଛି । ଅର୍ଥାତ୍ ଲାବଣ୍ୟବତୀର ନାସିକା ତିଳଫୁଲ ପରି, କୁନ୍ଦ ପୁଷ୍ପ-ଦନ୍ତ, ମୁଖ-ଧଳା ପଦ୍ମ, ଓଷ୍ଠ-ଲାଲ ପଦ୍ମ, ବାଳ-ନୀଳ ପଦ୍ମ. ଦେହଗନ୍ଧ-ଗୋଲାପ ପଦ୍ମ, ହାସ-କୁମୁଦ, ଅଧର-ବନ୍ଧୁଲି କାନ, ପାଟଳୀ, ନୟନ-ନଆଳୀ, ହସ୍ତର ଅଙ୍ଗୁଳି ଚମ୍ପାପରି, ଦେହ-ଶିରୀଷ, ଆଖି-ଉତ୍ପଳ, ଦେହବର୍ଣ୍ଣ-ଷଣ, ପାଦର ଅଙ୍ଗୁଳି-ଅଶୋକ, ହାତ ପାପୁଲି ଓ ପାଦତଳ-ମନ୍ଦାର, ଏହି ପରି ଷୋଳ ପୁଷ୍ପର ବର୍ଣ୍ଣନା କରି ଲେଖି ଯାଇଛନ୍ତି ।

କଳକ ସୃଷ୍ଟି କଲି ନ ହୁଡ଼ିଲ
ହରିଲା ଏରୂପେ ନବାଡ଼ିଲ

ସୁଗ୍ରୀବରେ ଯେ ଚନ୍ଦନ ମିଶ୍ରିତ
ରାମ ଲକ୍ଷ୍ମଣ ମୁଖେ ପ୍ରଶଂସିତ
କାଶିତ ଚନ୍ଦ୍ରହାସ ଝଲକ
ମନ୍ଦୋଦରୀ ବର ଶକ୍ତି ତିଳକ
ମେଘନାଦ ଶିଖା ଲକ୍ଷ୍ୟ ଝଲକ
ଦକ୍ଷ ଧରି ଯେ ସୁମନାବଳୀକ
ସର୍ବଦା ଅଙ୍ଗଦ ବାହୁରେ ବହରେ
ଉନ୍ନତ କୁଚକୁମ୍ଭ ଶତ୍ରୁହରେ
ଏଣୁକରି ପୁଷ୍ପଲଙ୍କା କମ୍ପନ
ଏତ କଳ୍ପକ କଥା ଉଦ୍ଦୀପନ କୋ.ବ୍ର.ସୁ.

କୋଠୀବ୍ରହ୍ମାଣ୍ଡ ସୁନ୍ଦରୀ ରୂପ ବର୍ଣ୍ଣନା କରିବାକୁ ଯାଇ ସ୍ୱଧାରା କନ୍ତୁ ହୁଡ଼ିନାହିଁ । ହରିଲୀଳା ପୂର୍ଣ୍ଣମାନରେ ଅଛି । ଶ୍ରୀରାମ ଚନ୍ଦ୍ରଙ୍କର ସହ ପ୍ରଥମ ଭେଟରେ ସୁଗ୍ରୀବ ଓ ଚନ୍ଦନ ନାମକ ବାନର ମିଶିଥିଲେ । ଏଦୁଇ ମିଶିବାପରେ ରାମଲକ୍ଷ୍ମଣଙ୍କୁ ପ୍ରଶଂସା କରିଥିଲେ । ରାମ ଓ ରାବଣର ଯୁଦ୍ଧରେ ରାବଣର ଚନ୍ଦ୍ରହାସ ନାମକ ଖଡ଼୍ଗ ଝଲକ ଉଠେ । ଏବଂ ଏକଘ୍ନୀ ଶକ୍ତି ଥାଏ । ଇନ୍ଦ୍ରଜିତ ଯେତେବେଳେ କସରତ ବାନ୍ଧ ଯୁଦ୍ଧକୁ ବାହାରେ ସେତେବେଳେ ଦେବତାମାନଙ୍କୁ ବନ୍ଦୀ କରି ପକାଏ । ଅଙ୍ଗଦ ମହାବଳମାନ୍ ଭାବେ ବହାରେ । କୁମ୍ଭକର୍ଣ୍ଣ ଅତି ଉଚ୍ଚ ଓ ମୋଟା ହେବାରୁ ଶତ୍ରୁର ଭୟ ଜାତକରେ । ଏପରି ଯୁଦ୍ଧ ହେବାରୁ ରାବଣର ପୁଷ୍ପକ ବିମାନ ଯିବା ଆସି-ବାରେ ଲଙ୍କା କମ୍ପି ଉଠେ । କୋଠୀ ବ୍ରହ୍ମାଣ୍ଡ ସୁନ୍ଦରୀର ଗ୍ରୀବାରେ ଚନ୍ଦନ ଥିବାରୁ ସୁନ୍ଦରଦିଶେ ଚନ୍ଦ୍ରତୁଲ୍ୟ ମୁଖରେ ପ୍ରଶଂସା ପାଉ ଅଛି । କୋଠୀ ବ୍ରହ୍ମାଣ୍ଡ ସୁନ୍ଦରୀର ହାସ ଚନ୍ଦ୍ରତୁଲ୍ୟ ଶୁଭ୍ର ହୋଇ ଅଛି । ଶକ୍ତିତୁଲ୍ୟ ତିଳକ ଲଗାଇ ଅଛି ମନ୍ଦୋଦରୀ ବର-କୋଠୀ

ବ୍ରହ୍ମାଣ୍ଡ ସୁନ୍ଦରୀ, ମେଘନାଦ–ମୟୂରର ପୁଚ୍ଛ ପରି କେଶରେ ସୁମନା-ବଳୀ-ପୁଷ୍ପସମୂହକୁ ଧରି ଶୋଭାପାଏ । ବାହୁରେ ସର୍ବଦା ଅଙ୍ଗଦ-ଅଳଂକାର ଥାଏ । ଉନ୍ନତ କୁଚକୁମ୍ଭ ଚିତ୍ତକୁ ହରଣ କରେ । ଲଙ୍କାରେ ସର୍ବଦା ପୁଷ୍ପକ ବିମ ନ କମ୍ପୁଥାଏ । କୋଟୀ ବ୍ରହ୍ମାଣ୍ଡ ସୁନ୍ଦରୀର କେଶରେ ପୁଷ୍ପସମୂହ କମ୍ପମାନ ହେଉଅଛି । କଳ୍ପାନ୍ତରରେ ଏହି କଥା ଦେଖାଗଲା ବୋଲି କବି କହି ଅଛନ୍ତି ।

ନେତ୍ରେ ସୁଭଦ୍ରତ ହେବା କହୁଛି
କୃଷ୍ଣ ଅର୍ଜ୍ଜୁନ ରଙ୍ଗ କରାଇଛି
ଗୁଣ ଅଞ୍ଜନ କପାଳ କମାଣ
ବାଣ ପ୍ରୟୋଗ କଟାକ୍ଷ ପ୍ରମାଣ
କର୍ଣ୍ଣବଜ୍ର ମଲ୍ଲୀକଢ଼ୀ ବହିଲା
ସୁଚାଟଙ୍କ ଆଡ଼ଣୀରେ ଶୋହିଲା
ଦ୍ରୋଣସୁତ ଉତ୍ତରହିଁ ବିଖ୍ୟାତ
କଳିକ ଉପଲକ୍ଷଣା ସାକ୍ଷାତ । କୋ. ବ୍ର' ସୁ

କୋଟୀ ବ୍ରହ୍ମାଣ୍ଡ ସୁନ୍ଦରୀର ନେତ୍ରରେ ଉତ୍ତମ ମହାଭାରତ ଯୁଦ୍ଧକୁ ପ୍ରକାଶ କରୁଅଛି । ସେହି ଯୁଦ୍ଧରେ କୃଷ୍ଣ ଅର୍ଜ୍ଜୁନ ଯୁଦ୍ଧରଙ୍ଗ କରୁଥିଲେ । ଏନେତ୍ରରେ କୃଷ୍ଣ–କଳା ଅର୍ଜ୍ଜୁନ-ଶ୍ୱେତ ଓ ରଙ୍ଗ ବର୍ଣ୍ଣ-ମାନଙ୍କୁ ପ୍ରକାଶ କରିଅଛି । ଏଠାରେ ଅଞ୍ଜନ ଧନୁର୍ଗୁଣ ଭାଲ ଧନୁ ହେଲା କଟାକ୍ଷ ଗୁଳକ ବାଣ ପ୍ରୟୋଗ ହେଲା । ମହାଭାରତ ଯୁଦ୍ଧରେ କର୍ଣ୍ଣ ବଜ୍ର ଧରିଥିଲେ, ଏବଂ ଆଡ଼ଣୀ–ଢ଼ାଲରେ ଶୋଭିତ ହୋଇ ଥିଲେ । ଆଉ ଦ୍ରୋଣସୁତ–ଅଶ୍ୱଥାମା ଓ ବିରାଟ ପୁତ୍ର, ଉତ୍ତର, ଏଦୁହେଁ, ଖ୍ୟାତ ହୋଇଥିଲେ । କୋଟୀ ବ୍ରହ୍ମାଣ୍ଡ ସୁନ୍ଦରୀ କର୍ଣ୍ଣରେ ବଜ୍ରଯୁକ୍ତ ମଲ୍ଲୀକଢ଼ୀ ଓ ଢ଼ାଲ ପରି ଉତ୍ତମ ଚାଟଙ୍କ ଧାରଣ କରି

ଶୋଭା ପାଉଥିଲା । ଦ୍ରୋଣସୁତ-କୋକିଳ ପରି ବାକ୍ୟ କହିବାରେ ବିଖ୍ୟାତ ହୋଇଥିଲା ।

ଏଥିଅନ୍ତେ ଶୃଙ୍ଗରସ     ଶୁଣହେ ମାନିନ ବେଶ
ଝଭାଫଳ ପରି ଖୋଷା     ଖୋଷିଛନ୍ତି ପୋଷାକେ,
ଗର୍ଭକ କଲା ତଉଁସ     ପ୍ରକାଶେ ରନ୍ଧ୍ରଭଉଁର
ଝଞ୍ଜି ଅଛି ଗୋଟିଏମା     ଧଇର୍ଯ୍ୟ କମା ଯେ
ଅନ୍ଧାର ନିଶାରେ ନନ୍ଦେ     ନିର୍ମଳ ଚାନ୍ଦ କ ଶୋଭେ
ଦଶଇ ତେମନ୍ତ ପଦ୍ମ     ଲୋଚନ କାନ୍ତ ଏ
ଏଥକୁ କେଶ ଭ୍ରୂ ଭଙ୍ଗେ     ଧାରି ଦେଖାଉଛନ୍ତି ମାଙ୍ଗେ
ଘନବନ୍ଧୁ ଭୃଙ୍ଗଶ୍ରେଣୀ     ଅଛନ୍ତି ଜିଣି ଏ
ଲଲାଟେ ଚନ୍ଦନ ଟିକା     ସିନ୍ଦୂର ବିନ୍ଦୁ ଶୋଭିତା
ଚନ୍ଦ୍ରକୋଳେ କି ସବିତା     ଏହ୍ନ ଭଙ୍ଗିତା ଏ
ଶ୍ରବଣେ ଚୁରୁକୁଣ୍ଡଳ     ଦୋହଲେ ଗଣ୍ଡମଣ୍ଡଳ
ସୁବର୍ଣ୍ଣ ପାଣି ଉପରେ     ଚିତ୍ରକୁ ହରେ ଏ
ଫୁଲ ଗୁଣା ମାଠ ଗୁଣା     କରଇ ବିବେକ ବଣା
ନାସାପୁଟକେ ପୂଟକେ     ଥାଇ ଝଟକେ ଏ
ଲକ୍ଷ୍ମୀ ବସ୍ତ୍ରେନେ କଜ୍ଜଳ     ନୟନେ ଦିଶେ ଉଜ୍ଜ୍ୱଳ
ପଦ୍ମେ କି ଭ୍ରମର ଖେଳା     ଜେମନ୍ତେ ଡୋଳା ଏ
କଣ୍ଠେ ସୁନାକଣ୍ଠିମାଳ     ପ୍ରବାଳେ ହୋଇଛନ୍ତି ଝଳ
ପଛକୁ ରୁଚିର ଫୁଲ     ମାନସ ଭୁଲ ଏ
ଉଚ୍ଚ ଘଞ୍ଚ କୁଚବେନ     ହେଲା ଦନୁ ଟଉବନ
ଦେଖିଲ ନାହିଁ ଅବନ     ଲୋଚନ ବେନ ଏ
ମାରିବାକୁ ମୁବାକୁଳ     କାମକର ଅନୁକୂଳ

ଚେକଟ୍ଟକ ଶାଢ଼ୀ ଘର ତଥା ସୁନ୍ଦର ଏ
ଶଦମାଳୀ ପାଟବ୍ରତ ତାଡ଼ରେ ଭୂଜ ପୀଠିତ
କାମଆଦ୍ଦ ଖଡ଼୍ ବାଘ୍ରୀ ହସ୍ତରେ ଶୋଭ୍ଵ ଏ
ବାମକରର ଅଙ୍ଗୁଳି ତ୍ରିପର ମୁଦରେ ଝଳ
ଚରଣରେ ବଳା ପଟେ ନାଦ ପ୍ରକଟେ ଯେ,
ପ୍ରଚଦରେ କଂସାମୁଦ ଶବଦେ ଧଇର୍ଯ୍ୟ ଖେଦ
ବେଢ଼ରେ ଅଳଙ୍କାରତ୍ର ଅନ୍ତ ବଚିତ୍ର ଯେ
ବ୍ୟକ୍ତ ବିଞ୍ଚଣୀ ପଣନ୍ତ ଭନ୍ତ ଉପରେ ଲମ୍ବିତ
ବନ୍ଧନ ଛନ୍ଦନ ମାଳ ମୋହନ ଛବ ଯେ ଲ୍ଲ. ବ

ଜବ ସମ୍ରାଟ ଉପେନ୍ଦ୍ର ଭଞ୍ଜ ରାଜନନ୍ଦିନୀମାନଙ୍କର ରୂପ ବର୍ଣ୍ଣନା କରିଥିଲେ ମଧ୍ୟ ସାଧାରଣ ମାଳିନୀର ବେଶ ବର୍ଣ୍ଣନା କରି ଅଛନ୍ତି । ମାଳିନୀ ଚେକଫୁଲପର ଖୋଷା ଖୋଷିଅଛି । ସେହି ଖୋଷାଭିତରେ ଚନ୍ଦ୍ରଶ ପୁରାଇ ଅଛି । ରତ୍ନଭୂଷଣର ପ୍ରକାଶ ହୋଇଅଛି । ପ୍ରାଚୀନ କାଳରେ ସ୍ତ୍ରୀମାନେ ଚେକଫୁଲ ପର ଖୋଷାପକାଇ ସେଥିରେ ଝିଅକାଠି ମାରିଥାନ୍ତି । ବାଲ୍ୟଜୀବନରେ ଲେଖକ ଦେଖି ଅଛନ୍ତି । ଆଜକାଲ ଯୁଗରେ ଯେ ସବୁ ଆଉ ନାହିଁ । ସେ ଗୋଟିଏ ଚମ୍ପାଫୁଲ ଖୋଷିଛି । ଯାହାଫଳରେ ସୌନ୍ଦର୍ଯ୍ୟ କମ ହେଉ ଅଛି । ଅନ୍ଧାର ଆକାଶରେ ନିର୍ମଳତାର ଗୁଡ଼ିକ ଖୋଷ ପାଇଲ ପର ଲଗାଇ ଥିବା ନକ୍ଷତ୍ରଗୁଡ଼ିକ ଯେପରି ଦିଶୁଅଛି । ଦର୍ଶନରେ ନୟନ ବନ୍ଦୀ ହୋଇ ରହୁଛି । ଅର୍ଥାତ୍ ଖୋଷ ରୂପକ ଆକାଶରେ ନକ୍ଷତ୍ର ରୂପକ ଅଳଂକାର ଝଞ୍ଜିଥିବାରୁ ଏପରି ଦେଖା ଯାଉଅଛି । କେଶକୁ ତ୍ରିଭଙ୍ଗକରି କୁଣ୍ଡାଇଛି । ସେହି କେଶ ଏପରି କଳା ହୋଇ ଅଛି ଯେ ମେଘ, ରାହୁ, ଭ୍ରମରର କଳାବର୍ଣ୍ଣଠାରୁ ଅଧିକ ହୋଇଅଛି ।

ଲଲାଟରେ ଚନ୍ଦନ ବନ୍ଦୁ ଉପରେ ସିନ୍ଦୂର ଟୋପା ଲଗା-ଇଛି । ଏହି ଚିତ୍ରାରୁ ଜଣାଯାଉଅଛି ଚନ୍ଦ୍ରକୋଳରେ ସୂର୍ଯ୍ୟଉଦୟ ହୋଇ ଅଛିକି ? କର୍ଣ୍ଣରେ ଲଗାଇ ଥିବା ସୁନ୍ଦର କୁଣ୍ଡଳ ଗଣ୍ଡ ମଣ୍ଡ-ଳରେ ହଲି ସୁନ୍ଦର ଦିଶୁଅଛି । ଫୁଲ ଗୁଣା ଓ ମାଠି ଗୁଣା ନାକରେ ଲଗାଇଥିବା ହେତୁ ସୁନ୍ଦର ଦିଶୁଅଛି, ଏହି ଅଳଂକାର ଆଜ କାଲି ଯୁଗରେ ଆଉ ତିଆରି ହେଉନାହିଁ କମ୍ବା ସୁନ୍ଦର ଦିଶିବ ନାହିଁ । ଯୁଗରୁଚି ଅନୁସାରେ ଅଳଂକାର ତିଆରି ହୋଇଥାଏ । କନ୍ତୁ ତତ୍କାଳୀନ ସମାଜର ଚିତ୍ର ଏଥିରୁ ଦେଖିବାକୁ ମିଳେ । ଲଜ୍ଜା ନଥାଇ କଜ୍ଜ୍ୱଳ ଗ୍ରହଣ କରିଅଛି । ପଦ୍ମରେ ଭ୍ରମର ଖେଳିଲାପରି ନୟନରେ କଜ୍ଜ୍ୱଳ ମିଶ୍ରିତ ହୋଇ ଲାଗିଅଛି ଏବଂ ସେହି ମାଳୀର ଶେଷରେ ସୁନ୍ଦର ଫୁଲ ଲାଗିଅଛି, ଏହି ବେଶ ମାନସକୁ ଭୁଲାଇ ଦେଉଅଛି, ପୁଷ୍ପବନ୍ତ ହେବାହେନଠାରୁ ବଢ଼ିଉଚ୍ଚ ହୋଇଥିବା କୁଚ ଦୁଇଟିକୁ ପୃଥିବୀ ଓ ଆଖି ଦେଖି ନାହିଁ ଅର୍ଥାତ୍ ଲୁଗାରେ ଘୋଡ଼ାଇ ରଖିଛି, ଯୁବକ କୁଳକୁ ଆକର୍ଷଣ କରିବା ଉଦ୍ଦେଶ୍ୟରେ ଶାଢ଼ୀଘରକୁ ଟେକ ଦେଉଅଛି । ଏହା କାମର ଅନୁକୂଳ ଅଟେ କି ?

ହାତରେ ବଦମାଳୀ ଓ ପାଟବ୍ରତ ଲଗାଇ ଅଛି ଏବଂ ତାଡ଼ ମଧ୍ୟ ଲଗାଇ ଅଛି, ଆଦ୍ଦରି ଖଡ଼୍ବାଘି ମଧ୍ୟ ହାତରେ ଲଗାଇଅଛି । ବାମକରର ଅଙ୍ଗୁଳିରେ ତ୍ରସରି ମୁଦି ସୁନ୍ଦର ଦିଶୁଅଛି । ଚର-ଣରେ ପଟଟପଟେବଳା ଲଗାଇଛି । ଚାଲିବାବେଳେ ବଳାରୁ ଶବ୍ଦ ଜାତ ହେଉଅଛି । ପାଦର ଅଙ୍ଗୁଳିମାନଙ୍କରେ କଂସା ମୁଦି ଲଗାଇ ଥିବାରୁ ଶବ୍ଦ ଜାତ ହୋଇ ଧୈର୍ଯ୍ୟ ହରଣ କରୁଅଛି । ପାଦ ତଳେ ବେଢ଼ରେ ଅଳତା ସୁନ୍ଦର ହୋଇ ଅତି ବଢିଥି ଦିଶୁଅଛି । ଲୁଗାର ପଣନ୍ତ ବାଟଣା ପରି ହୋଇଅଛି ଏବଂ ଉରୁ ଉପରେ ପଡ଼ିଛି । ସେ ଏପରି ପିନ୍ଧିଛି ଯେ ଅତି ସୁନ୍ଦର ଦିଶୁଅଛି ।

# ସୌର ବର୍ଣ୍ଣନା

ସେ ଠାରୁ ଯାଇ   ନୃପକଳାପ ଦେଖିଲେ ଯାଇ
ସଭା ମଣ୍ଡପ ବହୁଛି   ଆକାଶରସ୍ୱରୂପ
ତାରେ ଜ୍ୱଳନ୍ତ ସେ
ସପ୍ତମ ବୁଧ ରେବନ୍ତ   ପତ୍ତ ଶଙ୍କରଗୁରୁ
କବି ଅଛନ୍ତି ମଙ୍ଗଳ କେତୁ ଯହିଁମିଳନ୍ତି
ମିତ୍ର ତୋଷିତ ସେ
ସନ ମାନ ପାଇଣ   ବସିଲେ ସର୍ବ ସେ
ସନ୍ଧ୍ୟ ବତସ ଗଣ ପ୍ରବେଶ ଜବେ ସେ
ସଷ୍ଟାନକୌସ୍ତୁମା ହରଣା   ଜିନ ଦଣ୍ଡିକରକ
ମାଳାମଣ୍ଡନ କୁଣ୍ଡଳ କର୍ଣ୍ଣ ଭସ୍ମ ଲେପନ
ସେ ଅବସ୍ଥେବେ ସେ । ସ୍ୱ: ପ

ଭଗବାନ୍ ଶ୍ରୀକୃଷ୍ଣ ଓ ବଳରାମ ରୈବତ ପର୍ବତରେ ଯଜ୍ଞ ଆରମ୍ଭ କରିବା ଉଦ୍ଦେଶ୍ୟରେ ମହାବୀର ସାତ୍ୟକୀଙ୍କୁ ପଠାଇ ରାଜାମାନଙ୍କୁ ନିମନ୍ତ୍ରଣ କରାଇ ଥିଲେ । ସେହି ସମୟରେ ରାଜନ୍ୟ ବୃନ୍ଦ ସଭା ସ୍ଥଳରେ ପ୍ରବେଶ ହୋଇ ଦେଖିଲେ ଯେ ସଭାମଣ୍ଡପ ଆକାଶ ପରି ଦିଶୁ ଅଛି । ମହାଶୂନ୍ୟରେ ରବି ଚନ୍ଦ୍ର ମଙ୍ଗଳ ବୁଧ ବୃହସ୍ପତି ଶନି ରାହୁ କେତୁ ଗ୍ରହମାନେ ଥାଆନ୍ତି । ଏବଂ ନକ୍ଷତ୍ର ସମୂହ ଦିଶନ୍ତି । ଭଗବାନ୍ ଶ୍ରୀକୃଷ୍ଣ ତତ୍କାଳୀନ ରାଜାମାନଙ୍କ ମଧ୍ୟରେ ଶ୍ରେଷ୍ଠ ଥିବା ଜଣାଯାଏ । ରାଜାମାନଙ୍କ ଉପବେଶନ ନିମିତ୍ତ ଆଲୋକ ସଜ୍ଜା କରିଥିଲେ । ଜ୍ୟୋତିଷ ଶାସ୍ତ୍ରର ବର୍ଣ୍ଣନାନୁସାରେ ରବି ଓ ମଙ୍ଗଳ ରକ୍ତବର୍ଣ୍ଣ, ବୁଧ ଓ ବୃହସ୍ପତି ପୀତବର୍ଣ୍ଣ, ଚନ୍ଦ୍ର ଓ ଶୁକ୍ର ଶ୍ୱେତ ବର୍ଣ୍ଣ ଶନି କୃଷ୍ଣବର୍ଣ୍ଣ ଏପରି ଅଛି । ସଭା ସଜ୍ଜାରୁ ଜଣାଯାଏ । ଆଜକୁ ପ୍ରାୟ ପଞ୍ଚାଶବର୍ଷ ପୂର୍ବରୁ ଦେଖିଥିବା ରାଜ ସଭାର ବିଷୟ ଲେଖୁଛି ।

ରାଜସଭାରେ କାଚର ପଛରେ ଆଲୋକ ବର୍ତ୍ତିକା ରଖି ନାନାରଙ୍ଗରେ ଚିତ୍ରିତ କରାଯାଇଥାଏ । ଆଧୁନିକ ଯୁଗରେ ବିଦ୍ୟୁତାଲୋକ ଦ୍ୱାରା ହର୍ମ୍ୟମାନଙ୍କରେ ନାନା ପ୍ରକାର ଚିତ୍ର କରାଯାଇଥାଏ ଏବଂ କରାଯାଉ ଅଛି । ଆକାଶରେ ଥିବା ଗ୍ରହ ଓ ନକ୍ଷତ୍ର ବର୍ଣ୍ଣ ମାନଙ୍କ ପରି ନାନା ପ୍ରକାର ବିଦ୍ୟୁତ୍ ଆଲୋକରେ ସଜ୍ଜିତ କରା ଯାଉଅଛି । ଆବଶ୍ୟକ ହେଲେ ବଲବ୍ ଦେହରେ ନାନାରଙ୍ଗର କାଗଜ ଦିଆଯାଇ ରଙ୍ଗୀନ୍ କରା ଯାଉଅଛି । ଶ୍ରୀକୃଷ୍ଣ ଓ ବଳରାମଙ୍କ ଦ୍ୱାରା ଆହୂତ ସଭାରେ ବିଦ୍ୟୁତାଲୋକ ଥିବା ଆଶ୍ଚର୍ଯ୍ୟ ନୁହେଁ । ଆଉରି ଗୋଟିଏ କଥା ଜଣାଯାଉଛି ମହାଭାରତର ମହାଯୁଦ୍ଧରେ ଭାରତର ସମସ୍ତ ଶିକ୍ଷା ଓ ସଭ୍ୟତା ବହୁ ଦିନଯାଏ ଲୋପ ପାଇ ଯାଇଥିଲା । ଆକାଶରେ ସପ୍ତର୍ଷି ମାନଙ୍କର ବର୍ଣ୍ଣନା କରାଯାଇଥାଏ । ଏଠାରେ ମହାକବି ଉପେନ୍ଦ୍ର ଋଷି ମାନଙ୍କର ବର୍ଣ୍ଣନା ମଧ୍ୟ କରି ଯାଇ ଅଛନ୍ତି ।

